# କବି-ବାଣୀ

ଆମ ଭାଷାର ବଡ଼ ବଡ଼ କବିମାନଙ୍କର ରଚନାରୁ ବାଛି ବାଛି ବାଣୀମାନ ଏ ବହିଟିରେ ସଂକଳନ କରାଯାଇଛି । ବହି ଶେଷରେ କିଛି ଢଗଢମାଳି ଦିଆଯାଇଛି । ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଏହି ବାଣୀଗୁଡ଼ିକ ପାଠକଲେ ଆନନ୍ଦଲାଭ କରିବା ସହିତ ଜ୍ଞାନଲାଭ କରିବେ । ସେମାନଙ୍କର ଲେଖା ଓ କଥାକୁ ସରସ କରିବା ପାଇଁ ଏ ବାଣୀ-ସଂକଳନ ବହିଟି ସହାୟକ ହେବ ।

---

# ସୂଚୀ


୧ । ଚରିତ୍ର : ୧
୨ । ଧୈର୍ଯ୍ୟ : ୨
୩ । ବନ୍ଧୁ : ୨
୪ । ପରୋପକାର : ୪
୫ । ପିତା ମାତା ଓ ପରିବାର : ୬
୬ । ଭଲ ଓ ମନ୍ଦ ଲୋକ : ୧୦
୭ । ଗୁଣ ଓ ଗୁଣୀ : ୧୩
୮ । ନିନ୍ଦା ଓ ପ୍ରଶଂସା : ୧୪
୯ । ରାଜା ଓ ପ୍ରଜା : ୧୫
୧୦ । ତ୍ୟାଗ ଓ ଆଦର୍ଶ : ୧୬
୧୧ । ଜାଣିସୁଣି : ୧୯
୧୨ । ଗୁରୁ : ୨୩
୧୩ । ବିଦ୍ୟା : ୨୪
୧୪ । ଭକ୍ତି : ୨୭
୧୫ । ଧନୀ ଦରିଦ୍ର : ୨୯
୧୬ । ସୁଖଦୁଃଖ : ୩୦
୧୭ । ଧର୍ମ : ୩୩
୧୮ । କର୍ମ : ୩୭
୧୯ । କ୍ରୋଧ : ୩୮
୨୦ । ଦୟା : ୩୯
୨୧ । କ୍ଷମା : ୪୦
୨୨ । ସତ୍ୟ : ୪୨
୨୩ । ଭାଗ୍ୟ : ୪୩
୨୪ । କର୍ତ୍ତବ୍ୟ : ୪୪
୨୫ । ବିଶ୍ୱାସ : ୪୬
୨୬ । ଅନିତ୍ୟତା : ୪୭
୨୭ । ଭୟ : ୪୮
୨୮ । ପାପ ଓ ପାପୀ : ୫୦
୨୯ । ସାହସ : ୫୧
୩୦ । ମଣିଷର ମନ : ୫୨
୩୧ । ଯଶ ଓ କୀର୍ତ୍ତି : ୫୫
୩୨ । ବିବିଧ ବିଷୟ : ୫୭
୩୩ । ଠଗ-ଠମାଳି : ୬୫

# ଚରିତ୍ର

୧ । ଥିଲେ 'ଥାଉ ପଛେ ଗୁଣ ହଜାର
ଚରିତ୍ର ନ ଥିଲେ ସବୁ ଅସାର ।

୨ । ଚରିତ୍ରେ କରେ ସେ ବିଶେଷ ମମତା
ଚରିତ୍ର ହିଁ କରେ ମାନବେ ଦେବତା ।

ଜଗତେ ଯେ ଚରିତ୍ର ହୋଇ ସାବଧାନ
ମୀତ ହେଲେ ବି ସେ ପୂଜ୍ୟ ମହାସ୍ଥାନ ।

୩ । ସୁଯମୀ ମାନବ ଇହ ଜଗତରେ
ଲଭଇ ସର୍ବଦା ସୁଖ
କାମ, କ୍ରୋଧ, ଲୋଭ, ଶୋକ, ମୋହମାନ
ନପାରଇ ଦେଇ ଦୁଃଖ ।

ପରଧନ, ରୂପ, ବଳ, କୁଳ, ସୁଖ
ସଉଭାଗ୍ୟ ସତକାରେ
ଯେଜନ ଈର୍ଷାକୁ କରଇ ପୋଷଣ
ବୁଡ଼େ ଦୁଃଖ ପାରାବାରେ ।

୪ । ନିଜର ଚରିତ୍ର ଯାର ଅମୂଲ୍ୟ ସମ୍ପଦ
ଅପରକୁ ଦିଏ ନାହିଁ ଭୟ
ନିର୍ଭୀକ ସେ, ପଥ ତାର ସଦା ନିରାପଦ
ସବୁଠାରେ ଲଭେ ସେହୁ ଜୟ ।

(କାଳନ୍ଦୀଚରଣ)

୫ । ଚରିତ୍ରହୀନର କୁଳ ନୁହଇ ପ୍ରମାଣ
ମାନ୍ତସାର ବାକ୍ୟ ଏହା ବୁଝ ହେ ସୁଜନ !
ନୀଚକୁଳଜାତ ଲୋକ ସଦାଚାର ବଳେ
ଶ୍ରେଷ୍ଠ ପଦ ଅଧିକାରୀ ହୁଅଇ ଭୂତଳେ ।

## ଧୈର୍ଯ୍ୟ

୬ । ବିପଦରେ ଧୈର୍ଯ୍ୟ ସମ୍ପଦରେ କ୍ଷମାଭାବ
ଯୁଦ୍ଧେ ପରାକ୍ରମ ଅଭିଳାଷ ଯଶୋଲାଭ
ସଭାରେ ବଚନ ସ୍ପୃହା ଶାସ୍ତ୍ରରେ ମନ୍ତ୍ର
ମହତ-ଜନର ସ୍ୱଭାବ ସୁଲଭ ଗନ୍ତ । (ନୀତିଶତକ)

୭ । ଧୀର ସ୍ଥିର ନୋହି ଉତ୍ତେଜିତ ହେଲେ
କାର୍ଯ୍ୟ କେବେ ସିଦ୍ଧ ନୁହେଁ
ଧୀର ପାଣି ସିନା ପଥର କାଟଇ
ସ୍ରୋତ ତହିଁ ବ୍ୟର୍ଥ ହୁଏ । (ନୀତିବାଣୀ)

୮ । ଧୀରେ ଚାଲ ସିଧା ସହଜ ବାଟେ
ଧୀରପାଣି ଏକା ପଥର କାଟେ,
ହାନିରେ ଲାଭରେ ଧୀର
ରହିଥାଏ ଯେହୁ ସଂସାରରେ ସେହୁ
ବୋଲାଏଟି ସିନା ବୀର । (ଲକ୍ଷ୍ମୀକାନ୍ତ)

## ବନ୍ଧୁ

୯ । ବନ୍ଧୁ ନିକଟରେ ମନକଥା ସବୁ
କହିବାକୁ ଲାଗେ ସୁଖ

ବସନ୍ତ ନକଟେ ତହିଁ ପାଇଁ ସିନା
ପିକ ହୁଏ ବାବଦୁକ । (ଗଙ୍ଗାଧର)

୧୦ । କପଟ ବନ୍ଧୁ ଏ ଯେହ୍ନେ ସଂପଦର ସାଥୀ
ବିପଦେ ପାସୋରି ଯେ ଯା ବାଟ କାଟିଯାନ୍ତି ।
(ନନ୍ଦକିଶୋର)

୧୧ । ଦେଖିଲେ ମିତ୍ର ଦୋଷ ବାରେ
ନ କର ପ୍ରୀତି ତାର ଠାରେ,
କରିଲେ ପ୍ରୀତି ତାର ସଙ୍ଗେ
କଷଣ ମିଳେ ନିଜ ଅଙ୍ଗେ । (ମୀତନାଣୀ)

୧୨ । ପ୍ରତ୍ୟକ୍ଷରେ ପ୍ରିୟବାକ୍ୟ କହି ତୋଷେ ମନ
ପରୋକ୍ଷରେ କରୁଥାଏ ଅନଷ୍ଟ ସାଧନ ।
ଏ ରୂପ ମିତ୍ରକୁ ତ୍ୟାଗ କରିବା ଉଚିତ
ମୁଖେ ସୁଧା, ହୃଦେ ତାର ଗରଳ ପୂରିତ । (ଚିନ୍ତାମଣି)

୧୩ । ସୁନାର ପରୀକ୍ଷା ହୁଏ କଷଟି ପଥରେ
ବନ୍ଧୁର ପରୀକ୍ଷା ହୁଏ ବିପଦ କାଳରେ । (ଚିନ୍ତାମଣି)

୧୪ । ମଣିଷ ଚିହ୍ନିବା ସହଜ ନୁହେଁ
ବିପଦରେ ବନ୍ଧୁ ପରଖା ହୁଏ
ଅସଲ ଘାଟଟି ସେହି
ସୁଖ ବେଳେ ବନ୍ଧୁ ଅନେକ ମିଳନ୍ତି
ଦୁଃଖରେ ନ ଥାଏ କେହି । (ଲକ୍ଷ୍ମୀକାନ୍ତ)

୧୫ । ଉପକାରୀ ମିତ୍ରକୁ ଯେ ପ୍ରତାରଣା କରେ
ତା ସମାନ ଅଧାର୍ମିକ ନାହିଁ ଏ ସଂସାରେ ।

ମିତ୍ରଠାରୁ ଉପକାର ପାଇ ଯେଉଁ ଜନ
ମିତ୍ର କାର୍ଯ୍ୟ ନ କରଇ ସେହିଟି କୃତଘ୍ନ ।
(ବାଲ୍ମୀକି ରାମାୟଣ)

୧୬ । ଯେ ହିତ କରେ ପର ହୋଇ
ତା ତହୁଁ ବନ୍ଧୁ ଅନ୍ୟ ନାହିଁ । (ଭାଗବତ)

## ପରୋପକାର

୧୭ । କାପୁରୁଷ ପରି ମରିବା ଜଗତେ
ନୁହେଁ ନର-ପଉରୁଷ
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ । (ଗୋପବନ୍ଧୁ)

୧୮ । ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭିଆଣ
ସାର୍ଥକ ଜନମ ତାର ଏକା ସିନା
ପରହିତେ ଯାର ପ୍ରାଣ । (ଗୋପବନ୍ଧୁ)

୧୯ । ବିଶ୍ୱର କଲ୍ୟାଣ ଆଶେ
ମରଣ ଯେ କରଇ ବରଣ
ମରି ଏ ମରତ ପଥେ
ସେଇ ଏକା ଲଭଇ ଜୀବନ । (ଗଡ଼ନାଏକ)

୨୦ । ସେହି ସିନା ଧନ୍ୟ ହୁଏ ଯେ ଜୀବନ
ହସି ହସି ପ୍ରାଣୀ ହିତେ
ସେ ନୁହେଁ ମାନବ ଭବ୍ୟ ଦେବ ଭାବ
ନବସଇ ତାର ଚିତ୍ତେ । (ପଦ୍ମଚରଣ)

୨୧ । ବିପଦ ପଡ଼ିଲେ ବାଣ୍ଟୋଇ ଭାଇରେ
ସାହା ଯେ ନୋହେ ଆନକୁ
ତାହାର ଜୀବନ ମରଣ ସମାନ
ଧିକ ତାର ଜୀବନକୁ । (ନନ୍ଦକିଶୋର)

୨୨ । ପର ଉପକାର ଯଶ ଥୋଇଲେ
ଦେଖ ମହାଦେବ ବିଷ ଖାଇଲେ । (ଉପେନ୍ଦ୍ର ଭଞ୍ଜ)

୨୩ । ମନ ବଚନେ ଧ୍ୟାନ କରି । ଯେ ପରେ ହୁଏ ଉପକାରୀ ॥
ବିନ ହରନ୍ତି ଦୁଃଖ ସୁଖେ । ସେ ଧନ୍ୟ ଇହ ପରଲୋକେ ॥
(ଭାଗବତ)

୨୪ । ତା ଜନ୍ମ ଧନ୍ୟ ଏ ସଂସାରେ
ଯେ ରହେ ପର ଉପକାରେ । (ଭାଗବତ)

୨୫ । ଧନ୍ୟ ଜୀବନ ଏ ଜଗତେ
ଯେ ପ୍ରାଣ ଧରେ ପ୍ରାଣୀ ହିତେ । (ଭାଗବତ)

୨୬ । ପରଦୁଃଖେ ଦୁଃଖୀ ହୋଇ ଦୁଃଖୀଜନ ପ୍ରତି
ଦୟାକର ହେବ ମୁହିଁ ସୁଶୀଳ ସୁମତି । (ମଧୁସୂଦନ)

୨୭ । ପରଦୁଃଖରେ ହୁଅ ଦୁଃଖୀ, ପରସୁଖରେ ହୁଅ ସୁଖୀ ।
ଧନ୍ୟ ସେ ଧନ୍ୟ ନରନାରୀ, ଜଗତ ଜନ ହିତକାରୀ ।
ସ୍ୱସୁଖ କରି ବିସର୍ଜନ, ପରାର୍ଥେ ଧରଇ ଜୀବନ ।
ଆଚରି କ୍ଷମା ପ୍ରେମ ବ୍ରତ, ପାଳଇ ଧର୍ମ ଅବିରତ ।
(ମଧୁସୂଦନ)

୨୮ । ପର ଉପକାର ଯେ କରେ
ଧନ୍ୟ ତାର ଜୀବନ

ମରତେ ଦେବତା ପିତା ସେ
ପୂଜ୍ୟ ତାର ଚରଣ ।     (ମଧୁସୂଦନ)

୨୯ । ପର ଉପକାର ପାଇଁ ଯାହାର ଜୀବନ
ଜଗତ ମଧ୍ୟରେ ସେହି ଲୋକ ଧନ୍ୟ ଧନ୍ୟ ।
ଅସ୍ଥିର ଜଗତ ମଧ୍ୟେ ସକଳ ଅସାର
ସାର ମାତ୍ର କରିବାର ପର ଉପକାର ।  (ଫକୀରମୋହନ)

୩୦ । ସେହି ଏକା ବଡ଼           ପରଦୁଃଖ ଦେଖି
ଚିତ୍ତ ଯାର ଯାଏ ଦ୍ରବି
ପରଲାଗି ଯେହୁ           ଦିଏ ଆତ୍ମବଳି
ପର ପାଇଁ ଅନୁଭବି ।     (ଲକ୍ଷ୍ମୀକାନ୍ତ)

## ପିତା, ମାତା ଓ ପରିବାର

୩୧ । ପିତା ମାତା ପରି ଆଉ କେ ଅଛି ସଂସାରେ
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କର ସେବାରେ ।
ତାଙ୍କ ସ୍ନେହ ଉପକାର ଅତୁଳ୍ୟ ଜଗତେ
ଭକ୍ତି ଭରେ ଶିଶୁଗଣ ସ୍ମର ସତତେ ।
ଭାଇ ଭଉଣୀଙ୍କଠାରେ ସ୍ନେହ ଭାବ ବାନ୍ଧି
ତୋଷିବ ତାହାଙ୍କୁ ସଦା ମିଷ୍ଟ କଥା କହି ।
କୁଟୁମ୍ବ ମଧ୍ୟରେ ଯେ ବା ଥିବେ ଗୁରୁଜନ
ସମସ୍ତଙ୍କୁ ସ୍ନେହଭକ୍ତି କର ଶିଶୁଗଣ ।
ପାଳିବ ଆନନ୍ଦେ ସଦା ଗୁରୁଜନ କଥା
କଦାପି କାହାର ମନେ ଦେବନାହିଁ ବ୍ୟଥା ।
ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।     (ମଧୁସୂଦନ)

୩୨ । ପ୍ରତ୍ୟକ୍ଷ ଦେବତା ବୋଲି ମଣିବ
ହେ ଜନନୀ ଜନକେ
କରିବ ଦୁହିଁଙ୍କ ସେବା ପ୍ରାଣପଣେ
ବାଳିକା ବାଳକେ ।

X X X

ଅଟନ୍ତି ପରମଗୁରୁ ପିତାମାତା
ବେଦ ଏହି ସାକ୍ଷୀ ।
ଆକାଶଠୁଁ ବଡ଼ ପିତା, ମାତା ବଡ
ପୃଥିବୀ ଅପେକ୍ଷା
(ମଧୁସୂଦନ)

୩୩ । ପିତା ମାତା ଗୁରୁଜନ ଦେବତା ସମାନ
ଭକ୍ତିଭରେ ତାଙ୍କୁ ସେବ ହେବ ସୁସନ୍ତାନ । (ମଧୁସୂଦନ)

୩୪ । ମାତାର ବଚନ ମେଣ୍ଟିଲେ ଆୟୁଷ ହୋଇ କ୍ଷୟେ
ପିତାର ବଚନ ଭାଙ୍ଗିଲେ ଧର୍ମନାଶ ଯାଏ ।
ମାତା ପିତା ବଚନ ଯେ ପୁତ୍ରକୁ ନବଧାର
ଏହା ଛାଡ଼ିଲେ ପିଣ୍ଡ ପ୍ରାଣ ଏକଇ ଶରୀର ।
(ସାରଳାଦାସ)

୩୫ । ପିତାମାତା କରନ୍ତି ଶରୀର ପାଳନ
ଯାହାଙ୍କ ଦୟାରେ ରହିଅଛି ଏ ଜୀବନ
ତାଙ୍କ ପାଦରେ ଜୁହାର,
ତାଙ୍କ ଋଣ ଶୁଝିବାକୁ ଶକତି କାହାର । (ଲକ୍ଷ୍ମୀକାନ୍ତ)

୩୬ । ସ୍ୱର୍ଗଠାରୁ ବଡ଼ ଜନ୍ମଭୂମି ଓ ଜନନୀ
ପୂଜିବ ତାହାଙ୍କୁ ନିତ ଠାକୁରାଣୀ ମଣି ।

ଦଶମାସ ଦଶଦିନ ଗରଭରେ ବନ୍ଧି
ମୋହପାଇଁ କେତେ ଦୁଃଖଛନ୍ତି ମାତା ସହି ।
ମାତାଙ୍କ ଲହୁରେ ଗଢ଼ା ହେଲା ମୋର ଦେହ
ଲାଳନ ପାଳନ କଲେ କରି କେତେ ସ୍ନେହ ।

X X

ମାତାଙ୍କ ମନରେ କେବେ ଦେବନାହିଁ ଦୁଃଖ
ତାଙ୍କୁ କଷ୍ଟ ଦେଲେ ମୋତେ ମିଳିବ ନରକ ।
ମାତାଙ୍କ କଲ୍ୟାଣେ ସବୁ ହୁଅଇ ମଙ୍ଗଳ
କୋଟିଏ ଜୁହାର ମୋର ତାଙ୍କ ପାଦତଳ ।

(ଲକ୍ଷ୍ମୀକାନ୍ତ)

୩୭ । ପିତା ମାତା ଯେ ଅଟନ୍ତି ଜାଣ ସାକ୍ଷାତ ଦେବତା
ଭକ୍ତିଭାବେ ମାନିଥିବ ପିତାଙ୍କର କଥା ।
ପିତାଙ୍କ ଦେହରୁ ମୁହିଁ ହୋଇଛି ଜନମ
ଜଗତ ଭିତରେ କେହି ନାହିଁ ପିତା ସମ ।
ପିତା ରୋଷ କଲେ ହୁଏ ନାନା ଅମଙ୍ଗଳ
ପିତାଙ୍କ ସନ୍ତୋଷେ ମିଳେ ସବୁ ପୁଣ୍ୟ ଫଳ ।

X X X

ପିତାଙ୍କର ଆଜ୍ଞା ସଦା କରିବ ପାଳନ
ନିତ୍ୟ କରୁଥିବ ତାଙ୍କ ଚରଣ ବନ୍ଦନ ।
ପିତା ଧର୍ମ, ପିତା ସ୍ୱର୍ଗ, ପିତା ତପ, ଜପ,
ସଂସାରରେ ପିତା ଏକା ଈଶ୍ୱର ସ୍ୱରୂପ । (ଲକ୍ଷ୍ମୀକାନ୍ତ)

୩୮ । କୁପୁତ୍ର କୋଟିରେ କୁମାତା ଗୋଟିଏ
ସହଜେ ନ ମିଳେ ଭବେ

ସନ୍ତାନ ଚିନ୍ତାରେ ପୂତ ମାତୃ ପ୍ରାଣ
ନିବେଦିତ ଲବେ ଲବେ ।
ମର୍ମସ୍ଥଳ ରକ୍ତଧାର
ଢ଼ାଳିପାରେ ମାତା ସୁଖେ ହସି ହସି
କାହିଁ ତୁଳନା ତାହାର ?

(କୁନ୍ତଳାକୁମାରୀ)

୩୯ । ପରିବାର ମଧ୍ୟେ ଜଣେ ପଡ଼ିଲେ ବିପଦେ
ସମ୍ଭାଳି ନଅନ୍ତି ଆଉମାନେ ପଦେ ପଦେ । (ଗଙ୍ଗାଧର)

୪୦ । ପିତାମାତା ସେନେହର କିବା ଅଛି ପଟାନ୍ତର
ସେ ଯେ ମହାସିନ୍ଧୁ ତାର କାହିଁଅବା ଥଳକୂଳ ।

(ପଦ୍ମଚରଣ)

୪୧ । ମାତୃ ସ୍ନେହ ସମ କି ଅଛି ସଂସାରେ
ଅଟେ ତା ସରଗ ସୁଧା
ଅନନ୍ତ ଅକ୍ଷୟ ଅମୃତ ଭଣ୍ଡାର
ପାନେ ନ ମେଣ୍ଟଇ କ୍ଷୁଧା । (ନନ୍ଦକିଶୋର)

୪୨ । ଦୁଃଖ ପାପେ ସବୁ ସାଂସାରିକ ପ୍ରୀତି
ଟାଣେ ପଡ଼ିଯାଏ ଜଣା
କିନ୍ତୁ ମାତୃସ୍ନେହ ଦୋଷ ଗୁଣ ସମ
ନାହିଁ ତାହାର କଳନା । (ନନ୍ଦକିଶୋର)

୪୩ । ଯେ ପିତା ମାତା ନ ସେବନ୍ତି
ଅନ୍ୟାୟ କର୍ମ ଆଚରନ୍ତି । (ଭାଗବତ)

## ଭଲ ଓ ମନ୍ଦ ଲୋକ

୪୪ । ସାଧୁ ସଜ୍ଜନ ସଙ୍ଗତରେ । ଧନ୍ୟ ସେ ନିତ୍ୟ ବାଧକରେ ॥
ସଜ୍ଜନ ସଙ୍ଗେ ସଦା ରହି । ପବିତ୍ର କର ଏହି ମହୀ ॥
ଦୁର୍ଜନ ସଙ୍ଗେ କଲେ ବାସ । ନିଶ୍ଚେ ଘଟିବ ସର୍ବନାଶ ॥
ସର୍ପ ସମାନ ଭୟଙ୍କର । ଦୁଜନ ଜନେ ପରିହର ॥
(ମଧୁସୂଦନ)

୪୫ । ଶିଳାରେ ଘଷିଲେ ଚନ୍ଦନ । ସୁବାସ କରେ ବିତରଣ ॥
ତେସନେ ସଂସାର କଷଣେ । ବିତରେ ସାଧୁ ପ୍ରେମଧନେ ॥
କାଞ୍ଚନ ଅଗ୍ନି ପରୀକ୍ଷାରେ । ଝଟକେ ତେଜ ଯେ ପ୍ରକାରେ ॥
ସଜ୍ଜନ ଦୁଃଖାଗ୍ନିରେ ଦହି ॥ ପୁଣ୍ୟର ତେଜରେ ଶୋଭଇ ॥
(ମଧୁସୂଦନ)

୪୬ । ଅସାଧୁ ହୁଅଇ ସାଧୁ ସାଧୁର ସଙ୍ଗରେ
ନିର୍ମଳ ପଙ୍କିଳ ଜଳ ନିର୍ମଳୀ ଯୋଗରେ ।(ମଧୁସୂଦନ)

୪୭ । ଫଳଭରେ ଅବନତ ଯଥା ତରୁଗଣ
ଜଳଭରେ ଅବନତ ନୀରଦ ଯେସନ
ନାନା ଗୁଣେ ସେହିପରି ନମ୍ର ସାଧୁଜନେ
ଐଶ୍ୱର୍ଯ୍ୟରେ ମଧ୍ୟ ଗର୍ବ ନ ବହନ୍ତି ମନେ ।
ପାଦପ ମସ୍ତକେ ଯଥା ରୌଦ୍ରତାପ ସହି ।
ଛାୟାଦାନେ ପଥିକର ସନ୍ତାପ ହରଇ ।
ସ୍ୱସୁଖ କାମନା ତେଜି ବହୁକ୍ଳେଶ ସହି
ସାଧୁଜନ ତଥା ଲୋକ-କଲ୍ୟାଣ ସାଧଇ । (ମଧୁସୂଦନ)

୪୮ । ସଜଳ ସଞ୍ଚୟ କରି ବାରଦ ଯେସନ
ଲୋକହିତ ଲଗି ତାହା କରଇ ବର୍ଷଣ ।
ସାଧୁଜନ ସେହିରୂପେ ଅରଜଣ ନ
ଲୋକହିତ ଲଗି ତାହା କରେ ବିତରଣ । (ମଧୁସୂଦନ)

୪୯ । କାଞ୍ଚନ ବିଶୁଦ୍ଧ କିମ୍ବା ସେ ଅଟେ ମିଶ୍ରିତ
ଜଣାପଡ଼େ ଅନଳରେ ହେଲେ ପରୀକ୍ଷିତ ।
ସାଧୁତା ବା ଅସାଧୁତା ମନୁଷ୍ୟର ତଥା
ବିପଦ କାଳରେ ଜଣାପଡ଼ଇ ସର୍ବଥା । (ମଧୁସୂଦନ)

୫୦ । ବାଳୁଙ୍ଗା ଉପାଡ଼ି କ୍ଷେତ୍ରୁଁ କୃଷକ ଯେସନ
ଶସ୍ୟକୁ ବଢ଼ାଏ କରି ବିବିଧ ଯତନ ।
ଉପାଡ଼ିଣ ହୃଦୟରୁ କୁପ୍ରବୃତ୍ତିଗଣ
ସୁଜନେ ସଦ୍‌ଗୁଣଚୟ କରନ୍ତି ବର୍ଦ୍ଧନ । (ମଧୁସୂଦନ)

୫୧ । ମହତ ଜନର ଲଗି ଅଙ୍ଗ ଛାୟା
ପବିତ୍ର ହୁଅଇ କ୍ଷୁଦ୍ର ପ୍ରାଣୀକାୟା
କ୍ଷଣମାତ୍ର ହେଲେ ସଜ୍ଜନ ସଙ୍ଗତି
ଛୁଟେ ସିନା ସତେ ସଂସାର ଦୁର୍ଗତି । (ଗୋପବନ୍ଧୁ)

୫୨ । ହେଲେ ଖଳ ଶଠ ବିଦ୍ୟା ବିମଣ୍ଡିତ
ନ ହୁଏ କି ଭୟଙ୍କର
ମଣିରେ ଭୂଷିତ ସର୍ପସମ ସେତ
ଜାଣି ଦୂରୁ ପରିହର । (ନୀତିଶତକ)

୫୩ । ଉଚ୍ଚେ ଥାଇ ମଧ୍ୟ ନମ୍ର ହୋଇଥାନ୍ତି
                    ସତତ ମହତ ଜନ
ରବି ଶଶୀ ତାରା କେତେ ଊର୍ଦ୍ଧ୍ୱେ ସ୍ଥିତ
                    ସମସ୍ତେ ନତ ବଦନ ।
(ଗଙ୍ଗାଧର)

୫୪ । କୁ ସଙ୍ଗ ବଳନାହିଁ ଜଗତେ ପାପ
କୁ ସଙ୍ଗୀ ସଙ୍ଗେ ମିଳେ ଘୋର ସନ୍ତାପ ।   (ଗଙ୍ଗାଧର)

୫୫ । ମହତକୁ ଏକା ମହତ ଚିହ୍ନଇ
                    ଇତର ଜନଙ୍କ ଅନ୍ଧ
ସୂର୍ଯ୍ୟୋଦୟ ଦେଖି ପ୍ରକୃତି ହସଇ
                    ଉଲ୍ଲୁକର ଦୃଷ୍ଟି ବନ୍ଧ ।
(ଗଙ୍ଗାଧର)

୫୬ । ଚାଲୁଣି ସମାନ ଅଟେ ଦୁର୍ଜ୍ଜନ ସ୍ୱଭାବ
ସାର ତେଜି ଦିଏ ହୃଦେ ଅସାରକୁ ଠାବ ।   (ଚିନ୍ତାମଣି)

୫୭ । ସଙ୍କଟାପନ୍ନ କ୍ଷୁଧା ହେଲେ ସଜ୍ଜନ
ନ ବଳାଏ ସେ ନୀଚ କରମେ ମନ,
ମୃଗ ମାଂସ ଭକ୍ଷଣକାରୀ କେଶରୀ
କ୍ଷୁଧା ବଶେ କି ତୃଣ ଭୋଜନ କରି ?   (ବିଶ୍ୱନାଥ କର)

୫୮ । ପରନିନ୍ଦା ବିନା          ଦୁର୍ଜ୍ଜନ କେବେହେଁ
                    ତୃପତି ନ ପାଏ ବାରେ
ରସ ଆସ୍ୱାଦନ          ଲଭି ସୁଧା କାକ
                    ଆଶା ରଖେ ବିଷ୍ଠା ଠାରେ ।   (ବିଶ୍ୱନାଥ କର)

୫୯ । ସାଧୁଙ୍କ ସଙ୍ଗତି ଯାହାର । ପବିତ୍ର ହୁଅଇ ଶରୀର ॥
ସାଧୁ ସଙ୍ଗତ ପ୍ରଭାବରେ । ପ୍ରଭୁର କୃପା ହୋଇ ତାରେ ॥
(ଭାଗବତ)

୬୦ । ଦେଖ ଏ ଯେତେ ନଦନଦୀ । ପ୍ରବାହେ ମିଳନ୍ତି ଜଳଧି ॥
ଲବଣ ଜଳେ ସେ ମିଶନ୍ତି । ସ୍ୱନାମ ଗୁଣ ପାସୋରନ୍ତି ॥
(ଭାଗବତ)

୬୧ । ଉତ୍ତମ ସଙ୍ଗେ ସଙ୍ଗ ଯାର । ସେ କରେ ଉତ୍ତମ ବେଭାର ॥
ହୀନ ସଙ୍ଗତେ ହୀନ ଗତି । ହରି କହନ୍ତି ଯଦୁପତି ॥
(ଟେବଟ)

୬୨ । ସହନ୍ତି ଧାରାପାତ ଶାଇଳଗଣେ
ଖଳ ବଚନ ଯଥା ସହେ ସୁଜନ । (ରାଧାନାଥ)

୬୩ । ଦିନମଣି ଯେବେ ହେବେ ପଶ୍ଚିମେ ଉଦୟେ,
ଅମାବସ୍ୟା ରାତ୍ରେ ଯଦି ଶଶୀ ଉଦେ ହୁଏ ।
ବୃଦ୍ଧର ଯଦ୍ୟପି ହୁଏ ଯୌବନ ସଞ୍ଚାର
ଖଳ କେବେ ସରଳ ନହେବ ମନେ କର । (ବନମାଳୀ)

## ଗୁଣ ଓ ଗୁଣୀ

୬୪ । ଦୋଷ ତେଜି ଗୁଣୀ ଗୁଣ କରିବ ଗ୍ରହଣ
ନୀର ତେଜି କ୍ଷୀର ଶୋଷେ ମରାଳ ଯେସନ ।
(ଚିନ୍ତାମଣି)

୬୫ । ଗୁଣ ଥିଲେ ରୂପରେ କି ଅଛି ପ୍ରୟୋଜନ
ରୂପ ଅଟଇ କେବଳ ବାହ୍ୟ ଆବରଣ । (ଗୋପବନ୍ଧୁ)

୬୬ । ଗୁଣ ଥିଲା ଲୋକକୁ ଯେ ଧନହିଁ ଏ ରାଜା
ଯେତେଣ ଯିବ ସେ: ତାର ସବୁଆଡରେ ପୂଜା ।
(ନାମରତ୍ନ ଗୀତା)

୬୭ । ପାଦ ବନେ ଗୁଞ୍ଜଫଳ, ଥିଲେ ନୋହଇ ବହୁମୂଲ୍ୟ ।
ତଳେ କନାରେ ମଣିବର, ଥିଲେ ନ ତୁଟେ ମୂଲ୍ୟତାର ।
(ଭୂପତି ପଣ୍ଡିତ)

୬୮ । ଗୁଣୀ ଜନର ସଙ୍ଗ ଥିଲେ
ଆଉ କି ଲୋଡେ ପ୍ରୟୋଜନ
ମୂର୍ଖର ସଙ୍ଗ ଏ ଜଗତେ
ସକଳ ଦୁଃଖର କାରଣ ।
(ନୀତିଶତକ)

## ନିନ୍ଦା ଓ ପ୍ରଶଂସା

୬୯ । ଅଯଥା ପ୍ରଶଂସା ଅତି ଅମଙ୍ଗଳକର
ପ୍ରଶଂସାକାଂକ୍ଷୀ ପ୍ରଶଂସା ପ୍ରାପ୍ତ ମାନବର ।
ପ୍ରଶଂସା ନହେଲେ ପୃଥ୍ୱୀ ପ୍ରକୃତ ଗୁଣର
ତତୋଽଧିକ ଅମଙ୍ଗଳ ହୁଏ ଜଗତର । (ଗଙ୍ଗାଧର)

୭୦ । ଆପଣାର ଦୋଷ ଥିଲେ ପର୍ବତ ସମାନ
ସୋରିଷ ସମାନ ତାକୁ ମଣୁଥାଏ ସାନ ।
ସୋରିଷ ସମାନ ଯେବେ ପରଦୋଷ ଦେଖେ
ଅଭିମାନ ବହ୍ନି ତାକୁ ଗିରିସମ ଲେଖେ । (ଗଙ୍ଗାଧର)

୭୧ । ନିନ୍ଦନ୍ତୁ ଠେକନ୍ତୁ ନୀତିଜ୍ଞ ଜଗତେ
ଆସୁ ଧନ ଅବା ଯାଉ ଇଚ୍ଛାମତେ

ଆଜି ହେଉ ମୃତ୍ୟୁ ଅବା ଯୁଗାନ୍ତରେ
ନ୍ୟାୟ୍ୟ ପଥୁଁ ଧୀର ଚଳେନ୍ତି ନ ନଳେ । (ମହିଶତକ)

୭୨ । ପ୍ରଶଂସନ୍ତି ଆଜ ଯାହା ଜନସାଧାରଣ
କରନ୍ତି ତା ଠାରେ କାଲି ଦୋଷ ଆରୋପଣ ।
(ନନ୍ଦକିଶୋର)

## ରାଜା ଓ ପ୍ରଜା

୭୩ । ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି
ପ୍ରଜା ଲାଗି ଇନ୍ଦ୍ର କରେ ଜଳବୃଷ୍ଟି ।
ପ୍ରଜା ଲାଗି ଉଦେ ରବି ଶଶୀ ତାର
ପ୍ରଜା ଲାଗି ବହେ ଶତ ନଦୀ ଧାର ।
ପ୍ରଜା ଲାଗି ରାଜ୍ୟ ପ୍ରଜାର ଶାସନ
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ । (ଗୋପବନ୍ଧୁ)

୭୪ । ପ୍ରଜା ଲାଗି ରାଜା, ପ୍ରଜା ହିତେ ରାଜନୀତି
ପ୍ରଜାଇଚ୍ଛା ଅଭିମତ, ରାଜା ମୂଳଭିତ୍ତି । (ଗୋପବନ୍ଧୁ)

୭୫ । ହ୍ରଦ ପଚେ ଜଳେ ବିଦ୍ୟୁତ ଅନଳେ
ଜଳଦାନେ ଘନ ବାଧ
ସୁଖ ତେଜ ରଜା ତୋଷିବ ପରଜା
ତେବେ ତ ପରମାବଧ । (ଗଙ୍ଗାଧର)

୭୬ । ରାଜଧର୍ମ ଅନୁସରି ପ୍ରଜାଏ ଚଳନ୍ତି,
ପ୍ରଜାଙ୍କ ଆଦର୍ଶ ସିନା ହୁଅନ୍ତି ନୃପତି ।

ନୃପତି କରିବେ ଯେବେ ଆପେ ଅନାଚାର
ଦୁରାଚାର ନିବାରିବେ କେମନ୍ତେ ପ୍ରଜାର ।
(ନନ୍ଦକିଶୋର)

୭୭ । ରାଜପ୍ରିୟ ଲୋକେ ଭାଗ୍ୟବାନ ବୋଲି
ବୋଲନ୍ତି ସଂସାର ଜନ
ଅଇଁଠା ଗୋଇଠା ଲଭନ୍ତି ସେ ଯେତେ
ଜାଣେ ଏକା ତାଙ୍କ ମନ । (ବଳଭଦ୍ର ଦେବ)

୭୮ । ଯେ ରାଜା ମନ ରଞ୍ଜେ । ରାଜ୍ୟସମ୍ପଦ ସୁଖେ ଭୁଞ୍ଜେ ॥
X X X
ରାଜାଙ୍କୁ ପିତୃ ପ୍ରାୟେ ଚିତ୍ତେ । ବିପ୍ରଙ୍କ ସେବା ଯାର ନିତ୍ୟେ ॥
ସନ୍ତୁଷ୍ଟେ ଆନନ୍ଦ ବଦନ । ବିମୁକ୍ତ ସଙ୍ଗେ ସଙ୍ଗ ଧ୍ୟାନ ॥
ଅସାଧୁ ଗଣେ ଦଣ୍ଡଧର । ସ୍ୱଭାବେ ଶରଣ ସୋଦର ॥
X X X
ଅନ୍ନ ନ ଥିଲେ ପ୍ରଜାଜନ । କେମନ୍ତେ ରଖିବେ ଜୀବନ ॥
ଦୁଷ୍ଟ-ମାରଣ ରାଜଧର୍ମ । ଏ ତ ସ୍ୱଭାବେ ରାଜକର୍ମ ॥
(ଭାଗବତ)

## ତ୍ୟାଗ ଓ ଆଦର୍ଶ

୭୯ । ଭୁବନ ବିଦିତ ଦଧୀଚି ଚରିତ
ଗୁରୁଣେ ତ ଅଛ ଶୁଣି
କଳ୍ପ ସୃଷ୍ଟି ସ୍ୱସ୍ତି ଦେଲେ ନିଜ ଅସ୍ଥି
ବିଶ୍ୱହିତେ ମହାମୁନି । (ଗୋପବନ୍ଧୁ)

୮୦ । ନ ହୋଇ ବ୍ୟାକୁଳ ଗ୍ରାମହିତେ ଭୁଲ
ବରଜନ୍ତୁ ସାଧୁଜନ
ଦେଶହିତେ ଗ୍ରାମ ଜଗତ କଲ୍ୟାଣେ
କର ଦେଶ ବିସର୍ଜନ । (ଗୋପବନ୍ଧୁ)

ସଂସାର ଅଟେ ମହାଶିକ୍ଷାଭୂମି
ତ୍ୟାଗ ମହାନ ସାଧନ
ଇତର ପ୍ରାଣୀ ସମ ନର ହେଲେ
ଜନମ ତା ଅକାରଣ । (ନନ୍ଦକିଶୋର)

୮୧ । ମଲାବେଳେ ବିଶ୍ୱଜୟୀ ବୀର ସିକନ୍ଦର
କହିଲେ ତାହା ଚିତ୍ତେ ଥରେ ଧର ।
ବୋଇଲେ, "ଏ ପ୍ରାଣ ଗଲେ ପିଣ୍ଡ ଛାଡ଼ି
ନେବେ ଯେବେ ମୋତେ କୋକେଇରେ କାଢ଼ି ।

ଦେଇଥିବ ତହିଁ ମୋ ଶବ ଶୁଆଇ
ବେନି ପାଶେ ବେନି କରକୁ ଝୁଲାଇ ।
ଯା ଦେଖି ଜାଣିବେ ଜଗତେ ସମସ୍ତେ
ଆସିଥିଲା ଫେରିଗଲା ଶୂନ୍ୟହସ୍ତେ ।"
ଏହି ମହାବାକ୍ୟ ମନେ ମନେ ହେଜ
ସତ୍ତ୍ୱଗୁଣ ଭଜ ଲୋଭ ମଦ ତେଜ ।
ଅକାରଣ କିମ୍ପା ତଣ୍ଡି ଅରକ୍ଷିତ
ଅଳ୍ପଦିନ ପାଇଁ ସଞ୍ଚୁଅଛ ବିତ୍ତ ? (ରାଧାନାଥ)

ଭୁଲିଯାଅ ଅନ୍ୟେ ଯାହା କଲ ଧନଦାନ
ଭୁଲିଯାଅ ଅନ୍ୟ ତୁମେ କଲ ଅପମାନ ।

ଭୁଲିଯାଏଁ କରିଅଛୁ ପର ଉପକାର
ଭୁଲିଯାଏଁ ଅନ୍ୟ ଯାହା କଲା ଅତ୍ୟାଚାର ।
(ଫକୀରମୋହନ)

୮୨ । କାଚ ସଙ୍ଗରେ ଥିଲେ ମଣି । ତାହାକୁ କାଚ ମଧ୍ୟେ ଗଣି ॥
ବୃଥା ଯେ ଗ୍ରନ୍ଥ ଅଧ୍ୟୟନ । ଯେବେ ନ କର ଆଚରଣ ॥
ବଳଦ ବହେ ଚନ୍ଦନଭାର । ମାଧୁରୀ ନ ଜାଣେ ତାହାର ॥
ଆହାର ନିଦ୍ରା ଭୟ ଜ୍ଞାନ, । ମାନବ ପଶୁପରେ ସମାନ ॥
(ଫକୀରମୋହନ)

୮୩ । ଏହି ଆଜ୍ଞା କର ଆହେ ପ୍ରଭୁ ଭଗବାନ
ମନେ ନ ରହିବ ଶତ୍ରୁକୃତ ଅପମାନ ।
ନ ଭୁଲିବ କେବେଁ ଉପକାରୀ ଉପକାର
ନ କରିବ ଶତ୍ରୁଗଣ ପ୍ରତି ଅତ୍ୟାଚାର ।

X X X

ଯେଉଁ ଦୟା ଯେଉଁ କ୍ଷମା ମାଗଇ ତୁମ୍ଭକୁ
କାତର ନ ହେବ ତାହା ଦେବାକୁ ଅନ୍ୟକୁ ।
ତୁମ୍ଭ ବାୟୁ ଅନ୍ନ ଜଳେ ଅଛୁ ଦେହଧରି
ଏହା ଯେହ୍ନେ କେତେବେଳେ ନଯିବ ପାସୋରି ।
ଯେଉଁ ଦୋଷ ଦେଖି ଆନେ ଜାତହୁଏ ରୋଷ
ସେହି ଦୋଷ ମୋତେ ଯେହ୍ନେ ନ କରୁ ପରଶ ।
ଅଥବା ନ ଦଅ କିଛି ପ୍ରଭୁ ଦୟାବାନ
ତୁମ୍ଭ ଇଚ୍ଛା ଯାହା ତାହା କର ମୋତେ ଦାନ ।
(ଫକୀରମୋହନ)

୮୪ । ସତ୍ୟ, ଦାନ, କର୍ମ, ଅନସୂୟା, କ୍ଷମା,
ଧୈର୍ଯ୍ୟ ଏହି ଷଡ଼ଗୁଣ
ମାନବିକତାର ପ୍ରଧାନ ନିଦାନ
ନ ଛାଡ଼ିବ କଦାଚନ ।

## ଜାତୀୟତା

୮୫ । ଜାତିର ଉନ୍ନତି ହେବ କିରେ ଭାଇ
ସ୍ୱାର୍ଥକୁ ଜଗତ ମଣି ?
ଗୋଦର ଗୋଡରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ।
ଜାତିର ଉନ୍ନତି ସେ କାହୁଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ
ଶାଗୁଣା ବିଲୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?
ଜାତି ନନ୍ଦିଘୋଷ ଚଳିବକି ଭାଇ
ସ୍ୱାର୍ଥକୁ ସାରଥି କଲେ
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧାଥିଲେ । (ମଧୁସୂଦନ ଦାସ)

୮୬ । ଥାଉ ତାର ନାମ, ଥାଉ ଉଚ୍ଚପଦ
ଥାଉ ତାର ପଛେ ଅତୁଳ ସମ୍ପଦ
ସବୁ ଅକାରଣ, ସବୁ ବୃଥା ସିନା
ନ ବାଜିଲେ ହୃଦେ ଦେଶପ୍ରୀତି ବୀଣା । (ଗଡ଼ନାୟକ)

୮୭ । ଜନନୀ ଯେ ଆଉ ଜନମ ଭୂଇଁ
ସରଗରୁ ବଳି ବଡ ଏ ଦୁଇ
ଏହି ଦୁହିଁଙ୍କର ସେବା
କରୁଥିଲେ ତୋତେ ସୁନାପୁଅ ବୋଲି
ସମସ୍ତେ କହିବେ ବାବା (ଲକ୍ଷ୍ମୀକାନ୍ତ)

୮୮ । ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ ।
ସ୍ୱାଧୀନତା ପଥେ ତଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା । (ଗୋପବନ୍ଧୁ )

୮୯ । ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।
(ମଧୁସୂଦନ)

୯୦ । ତୁହି ମା ଜନମଭୂମି ପବିତ୍ର ଭାରତଭୂମି
ତୋହର ସନ୍ତାନ ଆମ୍ଭେ ଅଟୁ ସରବେ
ତୋର ଶ୍ରୀଚରଣ ସେବା ପାଇଁ ମନପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ ।
ତୋ ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।
(ମଧୁସୂଦନ)

୯୧ ।    ସ୍ୱଦେଶ ସ୍ୱଗୃହ ଅଟେ ସ୍ୱରଗ ସମାନ
ଦେଶହିତେ ଗୃହହିତେ ଲଗାଇବ ପ୍ରାଣ ।
(ମଧୁସୂଦନ)

୯୨ ।    ଜନମଭୂମି ଯେ    ଜନମ ଦେଇଛି
ଜନନୀରୁ ବଳି ବଡ଼
ତହିଁ ପିନ୍ଧା ଉଠେ    ଦୟାମାୟା ପ୍ରୀତି
ପ୍ରାଣ ଚୂରି ତଳ ତଳ ।(ଗୋଦାବରୀଶ ମିଶ୍ର)

୯୩ ।    ଜନମଭୂମି ଯେ ମାଟି ପଥରର
ଜନନୀଙ୍କ ବଳି ବଡ଼
ସେ ଜନମଭୂମି ସେବା ଯେ କରଇ
ଧନ୍ୟ ନରଜନ୍ମ ତାର ।
ହ୍ରଦ ନଦୀ ବନ ପ୍ରାନ୍ତର ପର୍ବତ
ବଡ଼ ଏ ସକଳ ଯେତେ
ପ୍ରୀତି ପ୍ରାଣେ ବହେ ଜନନୀ ରକତ
ଜୀବନ୍ତ ପରିଏ ସତେ ।
ସରଗୁଁ ବଳିଏ ଜନମଭୂଇଁର
ହେଲେ ତିଳେ ଅପମାନ
ସିଂହ ଗରଜନେ ଉଠିବେଟି ମାତି
କୋଟି କୋଟି ତା ସନ୍ତାନ ।
(ଗୋଦାବରୀଶ ମିଶ୍ର)

୯୪ ।    ନ କରିଲେ ମାତୃଭାଷାର ଉନ୍ନତି
ଘୁଞ୍ଚିବନି କେବେ ଦେଶର ଦୁର୍ଗତି ।   (ଫକୀରମୋହନ)

୯୫ । ପଢ଼ିଲି ନାନା ଦେଶଭାଷା, କାହିଁତ ନ ପୂରିଲା ଆଶା ।
ହେଉ ପଛକେ ସେ ନିକୃଷ୍ଟ ମୋ, ମାତୃଭାଷା ମୋତେ ଶ୍ରେଷ୍ଠ ।
ଦେଖିଲି ବୁଲି ବହୁଦୂର, କାଞ୍ଚି, କାମାକ୍ଷା, କାନପୁର ।
ପାଇଲି ନାହିଁ ଘୂରି ଘୂରି, ମୋ ମାତୃଭୂମିର ମାଧୁରୀ ।
(ଫକୀରମୋହନ)

୯୬ । ପଶୁପକ୍ଷୀ ଯେତେ ଅଛନ୍ତି ଜଗତେ
ପୋଷନ୍ତି ସର୍ବେ ଉଦର
ତୁମ୍ଭେ ସେ ପ୍ରକାର ହେଲେ ସ୍ୱାର୍ଥପର
କି ଭେଦ ହେଲା ତୁମ୍ଭର ?
ତୁହି ଦେଶପ୍ରତି ଭାଷାର ଉନ୍ନତି
ଲୋଡ଼ ଜାତିପ୍ରତି ଗୌରବ
ଦେଶବାସୀ ଗଣ ଜାଣନ୍ତୁ ଆପଣ
ଯଥାର୍ଥ ଜଣେ ମାନବ । (ଫକୀରମୋହନ)

୯୭ । ଏ ଭାରତ ଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁ ଦେଶ ମଧ୍ୟେ ଏ ଦେଶ ସାର । (ରାଧାନାଥ)

୯୮ । ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।
ନାହିଁ ଯେବେ ହୃଦେ ଉଚ୍ଚ ଅଭିଳାଷ
କର ଆମୋଦର ପଲଙ୍କେ ବିଳାସ ।
ମୁକ୍ତକେଶୀଙ୍କର ଚରଣ ପ୍ରହାର
ଚନ୍ଦ୍ର ଶ୍ରେଣୀକର ବକ୍ଷଦେଶେ ହାର ।

ମାତୃଭାଷା ପୋଥି ଛୁଇଁବାକୁ କରେ
ଅନ୍ୟ କେଉଁ ଜାତି ଲଜ୍ଜାବୋଧ କରେ । (ଗଙ୍ଗାଧର)

୯୯ । ✓ ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?
(ଗଙ୍ଗାଧର)

# ଗୁରୁ

୧୦୦ । ଅନେକ କର୍ମରେ ଥାଉ ପଛେ ସେହୁ
ଗୁରୁପାଦେ ରଖୁ ଚିତ୍ତ
ସଦଗୁରୁ ପାଦେ ସେବା ରଖିଥିଲେ
ମୋକ୍ଷ ହେବ ହସ୍ତଗତ ।
(ଧର୍ମଦାସ)

୧୦୧ । ଗୁରୁ ଚରଣେ ନମସ୍କାର । ଯତ୍ନେ କରିବ ସପ୍ତବାର ॥
ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ॥
ଗୁରୁଟି ସର୍ବ ଦେବମୟେ । ମୁହିଁ ବସଇ ଗୁରୁ ଦେହେ ॥

୧୦୨ । ଗୁରୁ ନିନ୍ଦା କଲେ ପ୍ରାପ୍ତ ନ ହୁଅଇ ବିଦ୍ୟା
ବାତୁଳ ହୋଇ ବୁଲନ୍ତି ନୋହି ଯୋଗସିଦ୍ଧା ।
(ସାରଳାଦାସ)

୧୦୩ । ନିଜକୁ ଯେ ନିରନ୍ତର ଶିଷ୍ୟରୂପେ ଗଣେ
ନିଶ୍ଚୟ ସେ ଯୋଗ୍ୟତମ ଗୁରୁମଧ୍ୟେ ଜଣେ ।
୧୦୪ । ଅନ୍ଧାରରେ ବୁଡ଼ି ରହିଥିଲି ମୁଁ ଅଜ୍ଞାନ
ଦୟାକରି ଗୁରୁ ମୋତେ କଲେ ଜ୍ଞାନ ଦାନ ।

X X X

ଗୁରୁ ଯେ ଅଟନ୍ତି ସର୍ବ ଦେବତାଙ୍କ ସାର
ଗୁରୁଙ୍କ ମହିମା ତେଣୁ ଅଟଇ ଅପାର ।

X X X

ଗୁରୁଙ୍କର ଆଜ୍ଞା ସଦା ଶିରେ ଥିବ ଘେନି
ସ୍ମରଣ କରିବ ତାଙ୍କ ଶ୍ରୀଚରଣ ବେନି ।
ଗୁରୁଦେବ କୃପାମୟ
ଗାଅ ସର୍ବେ ମିଳି 'ଜୟ ଗୁରୁଙ୍କର ଜୟ' ।(ଲକ୍ଷ୍ମୀକାନ୍ତ)

୧୦୫ । ଭଲ କଥାଟିଏ ଯାହାଠାରୁ ଶୋ ଶିଖିବ
ଅବା ଯାହାଠାରୁ କିଛି ଜ୍ଞାନ ଅର୍ଜିବ
ତାଙ୍କୁ ଗୁରୁ ବୋଲି କହି
ଭକତି କରିବ ସଦା ତାଙ୍କୁ ପ୍ରିୟ ସହି । (ଲକ୍ଷ୍ମୀକାନ୍ତ)

## ବିଦ୍ୟା

୧୧୬ । ବିଦ୍ୟା ଅଟଇ ମହାଧନ । ବାଳକେ କର ଉପାର୍ଜନ ॥
ବିଦ୍ୟା ଅଟଇ ମହାରତ୍ନ । ହୃଦୟେ ଘେନ କରି ଯତ୍ନ ॥

ବିଦ୍ୟା ଅଟଇ ମହାସିନ୍ଧୁ । ଯେ ସଙ୍ଗେ ହୁଅ ହେ ପବିତ୍ର ॥
ବିଦ୍ୟା ଅଟଇ ମହାବଳ । ଯେ ବଳେ ଜିଣି ଭୂମଣ୍ଡଳ ॥
(ମଧୁସୂଦନ)

୧୦୭ । ବିଦ୍ୟା ହିଁ ଏକା ବିପତ୍ତିକାଳେ ହୁଏ ସଖା
ବିଦ୍ୟା ନ ପଢିଲା ଲୋକେ ପଶୁ ସଙ୍ଗେ ଲେଖା ।
ବିଦ୍ୟା ଥିଲେ ପ୍ରାଣୀଙ୍କି ସେ ସବୁଠାରେ ପୂଜା
ବିଦ୍ୟାହୀନ ହୋଇଲେ ସେ ରାଜା ନୁହେଁ ରାଜା ।
(ନାମରତ୍ନଗୀତା)

୧୦୮ । ଜଗତେ ବିଦ୍ୱାନ ଲଭଇ ପ୍ରଶଂସା
ଲଭେ ଆଦର ସର୍ବତ୍ର
ବିଦ୍ୟା ଯୋଗୁଁ ହୁଏ ସର୍ବବସ୍ତୁ ଲଭ
ସର୍ବତ୍ର ବିଦ୍ୟା ପୂଜିତ ।

୧୦୯ । ଲୋକରେ ସୁନ୍ଦର ରୂପ ନାହିଁ ବିଦ୍ୟା ପରି
ଗୁପ୍ତଧନ ବିଦ୍ୟା ଚୋର ନାହିଁ ପାରେ ହରି ।
ବିଦ୍ୟାବଳେ ଭୋଗ ସୁଖ, ଯଶ ଲଭେ ଜନ
ଗୁରୁଙ୍କର ଜ୍ଞାନଦାତା ବିଦ୍ୟା ବୋଲି ଜାଣ ।
ବିଦେଶ ଯାତ୍ରୀର ବିଦ୍ୟା ସଦା ସହଚର
ଦେବେ ଶ୍ରେଷ୍ଠ ରାଜପୂଜ୍ୟ ବିଦ୍ୟା ହିଁ କେବଳ ।
ଧନବଳେ ରାଜା ପୂଜା ପାଏ ନାହିଁ ଜନ
ବିଦ୍ୟାହୀନ ଲୋକରେ ସେ ପଶୁ ବୋଲି ଗଣ ।

(ନୀତିଶତକ)

୧୧୦ । ବିଦ୍ୟା ସୁଖ ଏ ଦୁଇ ନୁହେଁ ଏକ କଥା
ପରସ୍ପର ବଇରୀ ଜାଣ ହେ ମହାରଥୀ । (ସାରଳାଦାସ)

୧୧୧ । ମତ ଠାବରେ ଉତ୍ତମ ବିଦ୍ୟା ଯେବେ ଥିବ
ଗୁରୁପ୍ରାୟ ମଣି ତାକୁ ବିଦ୍ୟା ଘେନିଯିବ ।
ମତ ଲୋକ ବୋଲି ତାକୁ ନ ବୋଲିବ ତୁଣ୍ଡେ
ସୁପଣ୍ଡିତ ଠାରୁ ସେହୁ ବଳଇ ବ୍ରହ୍ମାଣ୍ଡେ ।
(ନୃସିଂହପୁରାଣ)

୧୧୨ । ନକ୍ଷତ୍ର ଭୂଷଣ ଚନ୍ଦ୍ରମା ଅଟଇ,
ରମଣୀ ଭୂଷଣ ପତି ଏହା କହି ।
ପୃଥିବୀ ଭୂଷଣ ଅଟେ ନରଗଣ
ସମସ୍ତ ଭୂଷଣ ବିଦ୍ୟା ଏକା ଜାଣ । (ରତ୍ନରେଣୁ)

୧୧୩ । ବୁଦ୍ଧି ବିବେକ ଜ୍ଞାନବଳେ
ମରଣ ଜିଣିପାରେ ହେଳେ । (ଭାଗବତ)

୧୧୪ । ଉଚ୍ଚ କୁଳରେ ଜାତ ହୋଇଥାଉ ପଛେ
ରୂପ ଯଉବନ ଧନେ ହେଉ ସୁଶୋଭନ
ବିଦ୍ୟାହୀନ ହେଲେ ସେହୁ ନ ପାଏ ଆଦର
ଯେଉଁପରି ଗନ୍ଧହୀନ ପଳାଶ କୁସୁମ ।
(ଚାଣକ୍ୟ ଅନୁବାଦ)

୧୧୫ । ବିଦ୍ୟାକୁ ଅମୂଲ୍ୟ ରତନ ଜାଣ
ପାଠୂଆକୁ ମିଳେ ସବୁଠି ମାନ
ଅପାଠୂଆ ହେଲେ କେହି
ସଂସାର ଭିତରେ ଜଣେ ବୋଲି ତୋତେ
କାହିଁରେ ଗଣିବେ ନାହିଁ । (ଲକ୍ଷ୍ମୀକାନ୍ତ)

# ଭକ୍ତି

୧୧୬ । ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥
(ଭାଗବତ)

୧୧୭ । ବ୍ରହ୍ମାଣ୍ଡ ମାଳମାଳ ହୋଇ । ତୋ ଲୋମକୂପେ ବରାଜଇ ॥
(ଭାଗବତ)

ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥

୧୧୮ । ସକଳ ତୀର୍ଥ ତୋ ଚରଣେ । ବନ୍ଦ୍ରକା ଧିବ କ କାରଣେ ॥

୧୧୯ । ମୋର ଭକତ ଯେଉଁ ନର । ଶୁଭ ଅଶୁଭ ନାହିଁ ତାର ॥
ଭକତ ଜନେ ବଶମୁହିଁ । ତାର ରକ୍ଷଣେ ମୋର ଦେହି ॥

୧୨୦ । ଭକତ ଜନଙ୍କର ଶତ୍ରୁ । ସମ୍ପଦେ ନୁହଇ ମୋହିତ ॥

୧୨୧ । ନୁହେଁ କେବେ ଶର ପ୍ରିୟ ବସ୍ତୁଗଣ
ସଖା ମାତ୍ର ଏକା ଶ୍ରୀହରି ସ୍ମରଣ ।
(ତୋପବନ୍ଧୁ)

୧୨୨ । ଯାହା ମୁଁ କରଇ, ଯାହା ମୁଁ କହଇ,
ଯାହା ମୁଁ ଚିନ୍ତଇ ମନେ,
ଜଗତର କର୍ତ୍ତା ପରମ-ଈଶ୍ବର
ଜାଣୁଛନ୍ତି ପ୍ରତିକ୍ଷଣେ ।

ମୋ ପାଶେ ଅଛନ୍ତି ଦିବସ ରଜନୀ
ମହାପ୍ରଭୁ ପରାତ୍ପର
ଏ କଥା ସୁମରି ହୃଦୟେ ତାହାଙ୍କୁ
ପୂଜିବି ମୁଁ ନିରନ୍ତର । (ମଧୁସୂଦନ)

୧୨୩ । ସଙ୍କଟ ପୂରିତ ଘୋର ଭବସିନ୍ଧୁ ଜଳେ
ଏକମାତ୍ର କର୍ଣ୍ଣଧାର ଚାରୁ ଭୁ ସକଳେ
ତୋର ମଙ୍ଗଳ ବିଧାନ
କରିଅଛୁ ମରଣକୁ ଅମୃତ ସୋପାନ
ସତ୍ୟପଥେ ଧର୍ମପଥେ ନେଇଯାଅ ମୋତେ
ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ
ତୁମ୍ଭେ ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।
(ମଧୁସୂଦନ)

୧୨୪ । ଈଶ୍ୱର ଦୟା ଆହା କିବା ଉଦାର
ଲଘୁ କରଇ ଦୁଃଖ ହୃଦୟଭାର ।
ଜନମାଏ ସନ୍ତୋଷ ମନୁଷ୍ୟ ମନେ
ମଣ୍ଡଇ ହୃଦ ରାଜ୍ୟ ଶାନ୍ତ ରତନେ । (ମଧୁସୂଦନ)

୧୨୫ । ସକଳ ଶାସ୍ତ୍ରେ ଥାଉ ଜ୍ଞାନ
ହୋଇଥାଉ କୁଳୀନ ଧନବାନ
ଭକ୍ତି ନଥିଲେ ପ୍ରଭୁପଦେ
ବୃଥା ଜୀବନ ସେ ସମ୍ପଦେ । (ଫକୀରମୋହନ)

# ଧନୀ ଓ ଦରିଦ୍ର

୧୨୬ । ଧନୀ ଲୋକ ପାଦେ କଣ୍ଟକ ବାଜିଲେ
ସରବେ ପୁଚ୍ଛନ୍ତି ବ୍ୟଥା
ଦରିଦ୍ର ପାହାଡ଼ୁ ଗଡ଼ି ପଡ଼ିଲେ
କେହି ନ କହନ୍ତି କଥା ।

୧୨୭ । ବରଷାକାଳ ଅଟେ ଉଦ୍ଭିଦ ମିତ୍ର
ମାତ୍ର ପଙ୍କଜ ମଲ୍ଲ, ନୋହେ ବିଚିତ୍ର
ଜଳ ଗହଳ ହେଲା ତା ପକ୍ଷେ ଯମ
ଅତି ସମ୍ପଦ ବାବୁ, ମହାବିଷମ । (ରାଧାନାଥ)

୧୨୮ । ଗୁଡ଼ଗଲେ ଦେହୁ ଅର୍ଥର ଝୁଲ
ବଡ଼ଲୋକ ହେବ ଗରିବ ଭଳ । (ଚିନ୍ତାମଣି)

୧୨୯ । ଘାରିଥାଏ ଯାକୁ ଅର୍ଥର ନିଶା
ପୁଅଠାରୁ ବଡ଼ ତାର ପଇସା । ଚିନ୍ତାମଣି)

୧୩୦ । ଧନଜନ ଦୁହେଁ ଚିର ଶତ୍ରୁ ଭବେ
କିଏ କି ନ ଜାଣେ କାହିଁ ?
ଧନ ରହିଥାଏ ପୂରି ଯେ ଠାବେଳେ
ଜନ ତ ଆସଇ ନାହିଁ ।

ଧନ ଯାଏ ମର୍ତ୍ତ୍ୟେ ବୋଲନ୍ତି, ସତେ ସେ
ଧନ ଦୁଇକଥା ପିନା;
ଲକ୍ଷ୍ମୀଙ୍କ ନଗରେ କୁବେର କେତେଲେ
ପିନ୍ଧୁଛନ୍ତି ଚମ୍ବକନା ।
(ଗୋଦାବରୀଶ ମିଶ୍ର)

୧୩୧ । ଦୁଃଖୀ ପାଇଁ ଧନେ କାହାର ଜଗତେ
ନ କାନ୍ଦେ ଅନ୍ତର ଛଳେ
ଯାହାର ଯେତେକ ଧନମାନ ଶିଖ
ପୂଜା ତାର ମହୀତଳେ
(ଗୋଦାବରୀଶ ମିଶ୍ର)

୧୩୨ । ଭକ୍ତ କହିଲା, "କହ ତେବେ ପ୍ରଭୁ !
କେଉଁ ପୂଜା ହେବ ସାର ?"
ଦେବତା କହିଲେ, "ଅନାଥ ଆତୁରେ
ପ୍ରେମ ସୁଧାନିଧି ଢାଳ ।
ସେଥିରେ ମୋହର ହେବ ଯୋଗ୍ୟ ପୂଜା
ସେଥିରେ ମାନେ ମୋ ମନ
ଅନାଥ ଆତୁର ଯିଏବେ ଯେ ତୋଷଇ
ପ୍ରିୟ ମୋର ସେହି ଜନ ।"
(କବୀର)

## ସୁଖ ଦୁଃଖ

୧୩୩ । ତିନି ଭୁବନରେ କୁହାପି ନୁହେଁ ତ
ସୁଲଭ ବିଶୁଦ୍ଧ ସୁଖ
କାମ୍ୟ ପ୍ରାପ୍ୟ ପ୍ରାପ୍ତ ସୁଖ ସଙ୍ଗେ ସଦା
ଅନ୍ତରାଳରେ ଥାଏ ଦୁଃଖ । (ଚିନ୍ତାମଣି)

୧୩୪ ।   ଚିରଦିନ ଅନ୍ଧକାର ନ ଉଦେ ଆକାଶେ
ଚିରଦିନ ନ ଭାସେ କେ ସମ୍ପଦ ବିଳାସେ ।
(କୁନ୍ତଳାକୁମାରୀ)

୧୩୫ ।   ବିପଦ ପ୍ରଭୁଙ୍କ କଷଟି ପାଷାଣ
ପରଖନ୍ତି ତହିଁ ନରହୃଦ ଟାଣ ।
ବିଦଗ୍ଧ ହେଲେ ହେଁ ବିପଦ ଅନଳେ
ଭସ୍ମ ନୋହିବ ଯେହ୍ନେ ଦାଉ ଦାଉ ଜଳେ ।
(ଗୋପବନ୍ଧୁ)

୧୩୬ । ଦୁଃଖ ଦେଇ ଯଦି ତୁମ ଦେଖାପାଏ
ରଖ ପ୍ରଭୁ ମୋତେ ଦୁଃଖରେ
ଯେଉଁ ସୁଖ ପାଇ ତୁମକୁ ହରାଏ
ଲୋଡ଼ାନାହିଁ ମୋର ସେହି ସୁଖରେ ।

୧୩୭ । ସୁଖ ଆଶେ ଭୋଳ ସରବେ ଏ କାଳେ
ସୁଖ ତ ଭବେ କ୍ଷଣିକ
କଏ ନ ଜାଣଇ ସୁଖ ଠାରୁ ସୁଖ
ଆଶାରେ ସୁଖ ଅଧିକ । (ରାଧାନାଥ)

୧୩୮ ।   ସୁଖ ଦୁଃଖ ଜଗତେ ନୁହଁଇ ସ୍ଥିର
ଚକ୍ରଗତି ପରାୟେ ଚିର ଅସ୍ଥିର । (ରାଧାନାଥ)

୧୩୯ ।   ସୁଖ ସମୟରେ ସକଳ ସାଥି
ଦିବା ଆଲୋକରେ ଜାଳନ୍ତି ବତି (ଫକୀରମୋହନ)

୧୪୦ । ଦୁଃଖ ହେଉ ସୁଖ ହେଉ ଯାଇଛି ଯା ବହି
କି ହେବ ବୃଥାରେ ଆଉ ତାହା କଥା କହି ।
ଜ୍ଞାନୀ ଲୋକ ସର୍ବ କାର୍ଯ୍ୟ ବର୍ତ୍ତୁରଣ କରେ
ମୂଢ଼ ଲୋକ ଅନୁତାପ କରେ ପଶ୍ଚାତରେ ।
(ଫକୀରମୋହନ)

୧୪୧ । ସୁଖରେ ସବୁ ସୁଖ ଯାଏ ଜଣା
ବ୍ୟାଧିରେ ଦେହେ ସର୍ବସ୍ୱ ବେଦନା
ଏକୁ ଆରେକ ପାଶେ ଯିବା ମନା ।
ସୁଖ ଦୁଃଖ ବେନି
ଥାନ୍ତି ସ୍ୱତନ୍ତ୍ର ସ୍ୱ ସ୍ୱ ଭାବ ଘେନି । (ଫକୀରମୋହନ)

୧୪୨ । ସୁଖ ପରେ ଦୁଃଖ, ତାପରେ ସୁଖ
ଘୂରୁଅଛି ଯଥା କୁମ୍ଭାର ଚକ
ଦୁଃଖେ ନ ପଡ଼ିବୁ ହଟି
ଛାତିକୁ ଫୁଲାଇ କୁଦା ନ ମାରିବୁ
ସୁଖରେ ଉଲୁସି ଉଠି । (ଲକ୍ଷ୍ମୀକାନ୍ତ)

୧୪୩ । ଧନ ଅଭାବେ ଦୁଃଖୀ କେହି
କେହି ବା ଦୁଃଖୀ ପୀଡ଼ା ଦେହି
କେହି ଦୁଃଖୀ ଜ୍ଞାତି ପରିଜନେ
ସମ୍ପୂର୍ଣ୍ଣ ସୁଖୀ ନାହିଁ ଜଣେ ।
(ଫକୀରମୋହନ)

# ଧର୍ମ

ଧର୍ମ ଏକ ପୋତ ଗଢ଼ିଛନ୍ତି ବୁଧ
ତରିବାକୁ ଏହି ସଂସାର ବାରିଧି ।
ଧର୍ମ ଏକା ପିତା ମହତ ପଣିଆ
ଆଉ ସବୁ କଥା ଅଢ଼େଇଦିନିଆ । (ରାଧାନାଥ)

ମାତ୍ର ଯୁଦ୍ଧବୀର ନୁହେଁ ଧର୍ମବୀର
କରନ୍ତା ନୁହଁଇ କେବେ ନଶିହାର ।
ଧର୍ମବୀର ବିନା ଧର୍ମ ସଂସ୍ଥାପନ
କରିବାକୁ ଅନ୍ୟ ନୁହଇ ଭାଜନ । (ରାଧାନାଥ)

ଧର୍ମ ଅର୍ଥେ ଯେହୁ କରନ୍ତି ବିଜୟ
ଯୁଦ୍ଧକ୍ଷେତ୍ର ତାଙ୍କ ମନୁଷ୍ୟ ହୃଦୟ ।
ଉପୁଜାଏ ବାନ୍ଧବ ଶତ୍ରୁଖାନ୍ତି
ଧର୍ମବଳ ଆଣିଦିଏ ଶତ୍ରୁପ୍ରୀତି । (ରାଧାନାଥ)

ଧର୍ମ ଆହା ସେ କିବା ଅମୂଲ୍ୟ ଧନ
ସରି ନୁହଇ ତାରେ ମଣି କାଞ୍ଚନ ।
ସ୍ୱର୍ଗୀୟ ମାଧୁର୍ଯ୍ୟରେ ସଦା ସୁନ୍ଦର
ମର୍ତ୍ତ୍ୟମଣ୍ଡଳେ କାହିଁ ତା ପଟାନ୍ତର । (ମଧୁସୂଦନ)

ବୃଥା ଜୀବନ ଯହିଁ ନାହିଁ ଧରମ
ପଶୁ ଲୀଳା ସାଧନ ମାତ୍ର କରମ । (ମଧୁସୂଦନ)

୧୪୯ । ବାଳ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବ
ଏ ଜୀବନ ଅନିଶ୍ଚିତ
କେ ଜାଣେ କାହାର ଆଜ ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।
କ୍ଷୁଦ୍ରକୀଟ ଉଇ ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ ଘର
ମୁହିଁ ସେହିପରି ସଞ୍ଚିବ ଯତନେ
ପୁଣ୍ୟ ଧନ ନିରନ୍ତର ।
ସର୍ବ ଅଧିପତି ସର୍ବ ଅନ୍ତର୍ଯାମୀ
ସର୍ବ ଶୁଭବୁଦ୍ଧି ଦାତା
ଧର୍ମର ଆକର ଅଚିନ୍ତ୍ୟ ଈଶ୍ୱର
ସର୍ବ ଭୁବନ ବିଧାତା । (ମଧୁସୂଦନ)

୧୫୦ । ଯୌବନେ ଧାର୍ମିକ ହେବ, ଏ ଜୀବନ
ଯେଣୁ ଅନିଶ୍ଚିତ
କେ ଜାଣେ କାହାର ଆଜ ମୃତ୍ୟୁକାଳ
ହେବ ଉପସ୍ଥିତ । (ମଧୁସୂଦନ)

୧୫୧ । ଯେ ଜନ ଧର୍ମ ଆଚରଇ
ଧନ୍ୟ ଧନ୍ୟ ସେ ପାପଜୟୀ । (ମଧୁସୂଦନ)

୧୫୨ । ସେହି ସେ ଧର୍ମ ସନାତନ ଧରି ରଖିଛି ଏ ଭୁବନ ।
ସେ ଧର୍ମପଥ ମଧୁମୟ ତାହାକୁ କର ହେ ଆଶ୍ରୟ ।
ଅଧର୍ମ ପଥ ପରିହରି ଦୃଢ଼ ବିଶ୍ୱାସ ହୃଦେ ଧରି ।
ସମ୍ପଦେ ଅବା ବିପଦରେ ଧର୍ମେ ନ ହୁଡ଼ କେବେେଁ ନରେ ।
(ମଧୁସୂଦନ)

୧୫୩ । ଧନ ଅର୍ଜନେ ଧର୍ମ କର
ଧର୍ମେ ପ୍ରାପତ ନରହର । (ଜଗବନ୍ଧୁ)

୧୫୪ । ଧର୍ମ ପକ୍ଷେ ଜୟ ସଦା ସୁନିଶ୍ଚୟ
ରଖ ହୃଦୟରେ ଏ ଦୃଢ଼ ପ୍ରତ୍ୟୟ ।
(ଗୋପବନ୍ଧୁ)

୧୫୫ । ଅଧର୍ମ ନାଶି ଧର୍ମ ପାଳ୍ତୁ
ଭୁ ନାଥ ପରମ ଦୟାଳୁ । (ଭାଗବତ)

୧୫୬ । ପର ଧର୍ମ ହୁଁ ସ୍ୱଧର୍ମ କୋଟି ଗୁଣେ ଶ୍ରେୟ
ସ୍ୱଧର୍ମେ ମରଣ ଭଲ, ପରମଧର୍ମେ ଭୟ ।

୧୫୭ । ଧର୍ମ ଅଧର୍ମ କଥା ନ ଜାଣୁ ଭୁଷ୍ଠ
ଧନ୍ଦ ହେଉଛୁ ଧନ ଅର୍ଜିବା ପାଇଁ ରେ
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ
ଧର୍ମରେ ଆତଯାତ ହେଉଛୁ ମଝିରେ ।

୧୫୮ । ଶତବର୍ଷ ଯଜ୍ଞ ପ୍ରତିମା ପୂଜାରେ
ଯେ ଧର୍ମ ନୁହେଁ ସଞ୍ଚିତ
କାହାପ୍ରତି କେବେ କୁପିତ ନୋହିଲେ
ହୁଏ ସେ ପୁଣ୍ୟ ଅର୍ଜିତ । (ନନ୍ଦକିଶୋର)

୧୫୯ । ଧର୍ମ ଲଙ୍ଘିବା ପାଇଁକି ଅଟେ ଯେଉଁ ପ୍ରାଣୀ
ଆୟୁ କ୍ଷୟ ଯାଏ ତାର ଶିଘ୍ର ହୁଏ ହାନି । (ଶାରଳାଦାସ)

———

# କର୍ମ

୧୬୦ । କର୍ମର ଅନୁସାରେ ଫଳ
ବୁଦ୍ଧି ଯେ କର୍ମେ ଅନୁସରେ,
ତଥାପି ସୁଧୀ, ନ୍ୟାୟପୂର୍ଣ୍ଣ ଳ
ବୁଦ୍ଧି ବିଚାରି କର୍ମ କରେ । (ନୀତିଶତକ)

୧୬୧ । ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ । (ଗୋପବନ୍ଧୁ)

୧୬୨ । କରମ କରିବୁ ଅଳସ ନୋହି
ହେବୁ ନାହିଁ ନିଜ ଧରମ ଦ୍ରୋହୀ
ଯାହା ଯିବୁ ତୁହି କରି
କର୍ମ ଅନୁସାରେ ଫଳ ଦେବେ ତୋତେ
ସରବ ଜାଣନ୍ତା ହରି । (ଲକ୍ଷ୍ମୀକାନ୍ତ)

୧୬୩ । କର୍ମ କରିବାରେ ଥିଲେ ହେ ବାଳକେ
ମନ ଦେଇ ତାହା କର,
ଶିଖରେ ପହଞ୍ଚିଅଛି ସେ ବାଳକ
ଚକ୍ଷୁ ଗଡ଼ିଛି ନକର । (ନନ୍ଦକିଶୋର)

୧୬୪ । ଉଦ୍ୟୋଗ ବିହୀନେ ସିଦ୍ଧ ନୁହେଁ ମନୋରଥ
କେତେବେଳେ ଚଳନାହିଁ ବିନା ଚକ୍ରେ ରଥ । (ଚିନ୍ତାମଣି)

୧୬୫ । ଭାଗ୍ୟଦେବୀ ଅନୁକୂଳ ଉଦ୍‌ଯୋଗୀର
ଅଳସ କଥାକୁ ସଦା ସେ ବଧିର ।

ଅସାଧ୍ୟ ମଣେ ଯା ଅଳସ,  କର୍ମବୀର ତା କରେ ବଶ ।
ଅଳସ ଯା ଅସାଧ୍ୟ ମଣେ, କର୍ମବୀର ତା ସାଧେ କ୍ଷଣେ ।
(ରାଧାନାଥ)

୧୬୬ । ଅଳସପଣ ପରିହରି, ଆନନ୍ଦେ ପରିଶ୍ରମ କରି ।
ସତ୍କାର୍ଯ୍ୟ କରି ଅନୁଷ୍ଠାନ, ସାର୍ଥକ କର ଦେହ ପ୍ରାଣ ।
ଅଳସେ ବୁଦ୍ଧି ବଳ କ୍ଷୟ, ଉଦ୍ୟମେ ସର୍ବ କାର୍ଯ୍ୟ ଜୟ ।
ଉଦ୍ୟୋଗ ବଳେ ସର୍ବସିଦ୍ଧି, ଜାଣିବ ଏହୁ ମହାବିଧି ।
(ମଧୁସୂଦନ)

୧୬୭ । ଧନହୀନ ବୋଲି କେବେହେଁ ଆପଣାକୁ ଅବଜ୍ଞା ନ କର
ଉଦ୍ୟୋଗୀ ଲଭଇ ଲକ୍ଷ୍ମୀ, ତେଣୁ କାର୍ଯ୍ୟେ ହୁଅହେ ତତ୍ପର ।
(ମଧୁସୂଦନ)

୧୬ । କର୍ମଫଳ ପ୍ରାଣୀ ଅବଶ୍ୟ ଭୁଞ୍ଜଇ
କେ କରିପାରିବ ଆନ
ଶତ ପ୍ରତିଷେଧ ଲଙ୍ଘି ପଶିଥାଏ,
କର୍ମଫଳ ବଳବାନ । (ଗଙ୍ଗାଧର)

୧୬୯ । ଗୃରିଆଡ଼େ ଶୁଭୁଅଛି ଉଠ ଜାଗ
ଅକ୍ଷି ଭିଡ଼ି ନିଜ କର୍ମେ ଲଗ ଲଗ ।
କର୍ମ ବାଷ୍ପରଥ ଧାଇଁ ଶଙ୍ଖ ସ୍ୱନେ
ଆସି ଏବେ ଲଗିଗଲଣି ଷ୍ଟେସନେ ।
ଚଢ଼ିବା ସମୟ ହେଲଣି ନିକଟ
ଶୋଇପଡ଼ିଅଛ ନ କିଣି ଟିକଟ । (ଗଙ୍ଗାଧର)

# କ୍ରୋଧ

୧୭୦ । ଯେହୁ କ୍ରୋଧ ଅନଳକୁ ଶାନ୍ତ କରିପାରେ
ଧନ୍ୟ ସେ ମହାତ୍ମା ଏହି ସଂସାର ମଧ୍ୟରେ ।
କି ନକରିପାରେ ଲୋକ କ୍ରୋଧ ଅନ୍ଧ ହୋଇ
ଭଲ ମନ୍ଦ କିଛି ସେହି ଜାଣି ନ ପାରଇ ।
(ବାଲ୍ମୀକି ରାମାୟଣ : କିଷ୍କିନ୍ଧ୍ୟାକାଣ୍ଡ)

୧୭୧ । କ୍ରୋଧକୁ ଜୟ କରିଥାନ୍ତି ସଜ୍ଜନ
ତେଣୁ ନୁହନ୍ତି କା'ର ଦୋଷ ଭାଜନ ।
କ୍ରୋଧ-ଜର୍ଜର ଯେଣୁ ଲଘୁର ଚିତ୍ତ,
ସଂସାର ତାର ପକ୍ଷେ ତେଣୁ ଅହିତ ।
(ନୀତି-ନିର୍ଝରିଣୀ)

୧୭୨ । କ୍ରୋଧ ଅନର୍ଥର ଅଟଇ ମୂଳ
ଧର୍ମ କର୍ମ ମାନ କରାଏ ଦୂର ।
ଦୃଢ଼ କରେ ପୁଣି ଭବ ବନ୍ଧନ
ତେଣୁ କ୍ରୋଧକୁ ବରଜ ତତ୍‌କ୍ଷଣ । (ରତ୍ନରେଣୁ)

୧୭୩ । କ୍ରୋଧ ମାନବର ପ୍ରଥମ ଅରି
ନାଶଇ ଅଂଗ ତହିଁ ବାସ କରି ।
କାଷ୍ଠ ମଧ୍ୟେ ଥାଇ ବହ୍ନି ଯେସନ
ସେହି ବହ୍ନି ବନ କରେ ଦହନ । (ରତ୍ନରେଣୁ)

୧୭୪ । ଭୁଜଙ୍ଗ ନିର୍ମୋକ ତେଜିଲା ପରାୟେ
କରେ ଯେ କ୍ରୋଧ ବର୍ଜନ

ଋଟେଚନ୍ଦ୍ରସ୍ତୁ ବୋଲି ସେହ୍ନି ମହାଜନେ
ପୂଜନ୍ତି ଜଗତଜନ । (ନନ୍ଦକିଶୋର)

୧୭୫ । ଯେ ଜନ କ୍ରୋଧ ବିବର୍ଜିତ
ତାହାର ସୁହୃଦ ଜଗତ । (ଜଗନ୍ନାଥ ଦାସ)

## ଦୟା

୧୭୬ । ମହତ ଜନର ଦୟା ସବୁଠାରେ
ସମେ ହୁଏ ବିତରିତ
କଣ୍ଟକ ମସ୍ତକୁଁ ନ କରଇ ତରୁ
ସ୍ୱଚ୍ଛାୟା ଅପସାରିତ । (ଗଙ୍ଗାଧର)

୧୭୭ । ଜୀବନେ ପାଳ ହେ ସୁନୀତି
ହୃଦୟେ ସଦା ରଖି ପ୍ରୀତି ।
ସକଳ ଜୀବେ ଦୟା ବହି
ପବିତ୍ର କର ଏହି ମହୀ ।
ତେଜିଣ ଦ୍ୱେଷ ଅହଙ୍କାର
ଅହିଂସା ଧର୍ମ କର ସାର ।
ଲଗାଇ ନିଜ ଧନ ପ୍ରାଣ
ଲୋକର କର ହେ କଲ୍ୟାଣ । (ମଧୁସୂଦନ)

୨୦୧ । ଦୁଃଖ-ସୁଖ ମିଶାମିଶି ଏ ବିଶ୍ୱ ସଂସାରେ
କିଏ କେଉଁଠାରେ ବେଶୀ ଭାଗ୍ୟ ଅନୁସାରେ ।
(ନନ୍ଦକିଶୋର)

୨୦୨ । ଚିରଦିନ କା'ର ନଯାଏ ସମାନ
ନୟୁଛିର ଚକ୍ର ନିତ୍ୟ ଭ୍ରାମ୍ୟମାନ । (ଫକୀରମୋହନ)

୨୦୩ । ଧନବନ୍ତ ଲୋକ ଯେବେ ଗର୍ବିତ ନୁହଇ
ତାହାକୁହି ଭାଗ୍ୟବନ୍ତ ସଂସାରେ ଯେ କହି ।
(ପୀତାମ୍ବର ଦାସ)

୨୦୪ । ଭାଗ୍ୟଥିଲା ଲୋକ ପିନ୍ଧା ପରକୁ ଦିଅଇ
ଅଭାଗ୍ୟବନ୍ତ ଲୋକ ଯେ ମାଗିବାକୁ ଯାଇ ।
(ବଳରାମ ଦାସ)

## କର୍ତ୍ତବ୍ୟ

୨୦୫ । ଦୁଃଖ ସୁଖ ମଧ୍ୟରେ କର୍ତ୍ତବ୍ୟ କର୍ମ
ସାଧିବା ମାନବର ଶାଶ୍ୱତ ଧର୍ମ ।
(ନନ୍ଦକିଶୋର)

୨୦୬ । କର୍ତ୍ତବ୍ୟ ପାଳି ଯେ ସୁଖ ଲଭେ କର୍ମୀଵୀର
ସେ ସୁଖ ଲଭିବେ ଲେଖା ନାହିଁ କାହାରି ।
(ନନ୍ଦକିଶୋର)

୨୦୭ । ଜାଣେ ଏ ଜୀବନ ନୁହେଁ ଜଳର ବୁଦ୍‌ବୁଦ
ନିତ ନବ କର୍ତ୍ତବ୍ୟରେ ହେବି ମୁଁ ଉଦ୍‌ବୁଦ୍ଧ ।
(ଫକୀରମୋହନ)

୨୦୮ । କର୍ତ୍ତବ୍ୟ ସାଧନ ସେ ତ ପ୍ରକୃତ ଜୀବନ
ଆଳସ୍ୟ ସମୟକ୍ଷେପ ଆତ୍ମାର ଦହନ ।
(ଫକୀରମୋହନ)

୨୦୯ । କରିବ କର୍ତ୍ତବ୍ୟ କାର୍ଯ୍ୟ ସାଧନ କେବଳ
ବିଚଳିତ ହେବ ନାହିଁ ନ ହେଲେ ସଫଳ ।
ସାଫଲ୍ୟ ବିଷୟେ କିଛି ନ କର ବିଚାର
ମଣିବ କେବଳ କର୍ମେ ତୁମ୍ଭ ଅଧିକାର ।
(ଫକୀରମୋହନ)

୨୧୦ । ଆସିଛ ଜଗତେ କହିଁ ନ ଯାଅ ପାସୋରି
ତୁମ୍ଭର କର୍ତ୍ତବ୍ୟ ଯାହା କଲ କି ସେପରି ?
ପଶୁର ସମାନ ସତ୍ୟ ଆହାର ବିହାରେ
ମାନବ ସ୍ୱତନ୍ତ୍ର ପ୍ରାଣୀ ଆତ୍ମ ବ୍ୟବହାରେ ।
(ଫକୀରମୋହନ)

୨୧୧ । ଶୁଣ ଶୁଣ ବାପା ମୋ ନିବେଦନ
ସାଧିବ କର୍ତ୍ତବ୍ୟ ଦେଇ ଜୀବନ ।
ପଚ୍ଛଘୁଞ୍ଚା ହେଲେ କାର୍ଯ୍ୟ ସାଧନେ
କିବା ପ୍ରୟୋଜନ ସେହି ଜୀବନେ ।
(ଫକୀରମୋହନ)

୨୧୨ । କର୍ତ୍ତବ୍ୟ କରମେ ନୋହିବ ବିମୁଖ
କ୍ରମେ କ୍ରମେ ତହିଁ ଉପୁଜିବ ସୁଖ ।
ନ ପାଇଲେ ଫଳ ନୋହିବ ନିରାଶ
ବିପଦେ ଉଚିତ ଦ୍ୱିଗୁଣ ସାହସ । (କୁନ୍ତଳାକୁମାରୀ)

# ସତ୍ୟ

୧୮୯ । ବାଳକେ ମୋର ବୋଲ କର । ସତ୍ୟ ପାଳିବ ନିରନ୍ତର ॥
ସତ୍ୟ ଅଟଇ ଶ୍ରେଷ୍ଠ ଧର୍ମ । ସତ୍ୟ ସାଧନ ଶ୍ରେଷ୍ଠ କର୍ମ ॥
ବ୍ରହ୍ମାଣ୍ଡ ମଧ୍ୟେ ସତ୍ୟ ସାର । ସତ୍ୟ ହିଁ ଏକା ବଳଆର ॥
ପିତାମାତାଦି ବନ୍ଧୁ ଜନ । ଐଶ୍ୱର୍ଯ୍ୟ ପୂର୍ଣ୍ଣ ଏ ଭୁବନ ॥
ଆବର ଗୁରୁ ଶାସ୍ତ୍ର ବାଣୀ । ସକଳ ତୁଳ କର ଆଣି ॥
ତଥାପି ସତ୍ୟଠାରୁ ସର୍ବେ । ନ୍ୟୁନ ହେବେ ସେ ଗୌରବେ ॥
(ମଧୁସୂଦନ)

୧୯୦ । ମୁଖେ ସଦା ସତ୍ୟ କଥା ସତ୍ୟ ଚିନ୍ତା ମନେ
ମୁଖେ ଅବା ମନେ ମିଥ୍ୟା ନ ରଖିବ କ୍ଷଣେ । (ମଧୁସୂଦନ)

୧୯୧ । ଭାଷିଣ ସତ୍ୟ ପ୍ରିୟ ବାଣୀ
ତୋଷିବ ନିତ୍ୟ ସର୍ବ ପ୍ରାଣୀ । (ମଧୁସୂଦନ)

୧୯୨ । ସତ୍ୟେ ମନ ରଖି ସତ୍ୟକୁ ବୁଝିବ
ଗାଇବ ସତ୍ୟର ଜୟ
ମଙ୍ଗଳ କାର୍ଯ୍ୟରେ ଲାଗିଥିବ ସଦା
ତେଜିଣ ସକଳ ଭୟ । (ମଧୁସୂଦନ)

୧୯୩ । ସତ କହିବାକୁ କାହିଁ ଡରିବ,
ସତ କହି ପଛେ ମଲେ ମରିବ ।
ମୋତେ ଏତିକି ଶିଖାଅ ସାଇଁ ହେ,
ମୋର ଧନ ଜନ ଲୋଡ଼ା ନାହିଁ ହେ !

୧୯୪ । ମିଥ୍ୟାକୁ ପାପ ବୋଲି ଜାଣି
କହିବ ସଦା ସତ୍ୟ ବାଣୀ । (ଜଗନ୍ନାଥ ଦାସ)

୧୯୫ । ସତ୍ୟ ସମ କଠୁ ବଚନ କାହିଁ ?
ମିଥ୍ୟାଠାରୁ ଗୀର ମଧୁର କାହିଁ ? (ନନ୍ଦକିଶୋର)

୧୯୬ । ସତ୍ୟରେ ମରିବ ସତ୍ୟରେ ତରିବ ଏହି ଆଜ୍ଞା ମୋତେ ହେଉ
କହେ ଭୀମଭୋଇ ଏ ମର୍ତ୍ତ୍ୟମଣ୍ଡଳେ ଯଶ ଅପଯଶ ଥାଉ ।
(ଭୀମଭୋଇ)

୧୯୭ । ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର । (ଗୋପବନ୍ଧୁ)

୧୯୮ । ସତ୍ୟ ଅଟେ ସବୁ ଗୁଣର ସାର
ସତ୍ୟକୁ କରିବୁ ଗଳାର ହାର ।
ସଦା ସତ ଥିବୁ ରଖି
ଅସତ ହୋଇଲେ ଜାଣିଥିବୁ ଭଲେ
ଆପେ ଆପେ ଯିବୁ ଠକି । (ଲକ୍ଷ୍ମୀକାନ୍ତ)

## ଭାଗ୍ୟ

୧୯୯ । ଭାଗ୍ୟବାନ ସଦା ଭାଗ୍ୟଫଳ ଲଭେ
ଅଭାଗା ଲଭେ ଅଶିବ
ସାଗର ମନ୍ଥନେ କେଶବ କମଳା
ଗରଳ ଲଭିଲେ ଶିବ (ଗଙ୍ଗାଧର)

୨୦୦ । କର୍ମଫଳ ହେନ ଜନ୍ମ ଲଭୁଛନ୍ତି
ଜୀବଗଣ ବସୁଧାରେ
ଫଳ ଭୁଞ୍ଜି ସାର ଯାଉଛନ୍ତି ପୁଣି
କୃତକର୍ମ ଅନୁସାରେ । (ଗଙ୍ଗାଧର)

୨୦୧ । ଦୁଃଖ-ସୁଖ ମିଶାମିଶି ଏ ବିଶ୍ୱ ସଂସାରେ
କଏ କେଉଁଠାରେ ବେଶୀ ଭାଗ୍ୟ ଅନୁସାରେ ।

(ନନ୍ଦକିଶୋର)

୨୦୨ । ଚିରଦିନ କା'ର ନଯାଏ ସମାନ
ଜଗତର ଚକ୍ର ନିତ୍ୟ ଭ୍ରାମ୍ୟମାନ । (ଫକୀରମୋହନ)

୨୦୩ । ଧନବନ୍ତ ଲୋକ ଯେବେ ଗର୍ବିତ ନୁହଇ
ତାହାକୁହିଁ ଭାଗ୍ୟବନ୍ତ ସଂସାରେ ଯେ କହି ।

(ପୀତାମ୍ବର ଦାସ)

୨୦୪ । ଭାଗ୍ୟଥିଲା ଲୋକ ପିନ୍ଧା ପରକୁ ଦିଅଇ
ଅଭାଗ୍ୟବନ୍ତ ଲୋକ ଯେ ମାଗିବାକୁ ଯାଇ ।

(ବଳରାମ ଦାସ)

## କର୍ତ୍ତବ୍ୟ

୨୦୫ । ଦୁଃଖ ସୁଖ ମଧ୍ୟରେ କର୍ତ୍ତବ୍ୟ କର୍ମ
ସାଧିବା ମାନବର ଶାଶ୍ୱତ ଧର୍ମ ।

(ନନ୍ଦକିଶୋର)

୨୦୬ । କର୍ତ୍ତବ୍ୟ ପାଳେ ଯେ ସୁଖ ଲଭେ କର୍ମୀର
ସେ ସୁଖ ଲଭିବେ ଲେଖା ନାହିଁ କଳଙ୍କିର ।

(ନନ୍ଦକିଶୋର)

୨୦୭ । ଜାଣେ ଏ ଜୀବନ ନୁହେଁ ଜଳର ବୁଦ୍‌ବୁଦ
ନିତ ନବ କର୍ତ୍ତବ୍ୟରେ ହେବି ମୁଁ ଉଦ୍‌ବୁଦ୍ଧ ।

(ଫକୀରମୋହନ)

୨୦୮ । କର୍ତ୍ତବ୍ୟ ସାଧନ ସେ ତ ପ୍ରକୃତ ଜୀବନ
ଆଳସ୍ୟ ସମୟକ୍ଷେପ ଆତ୍ମାର ଦହନ ।
(ଫକୀରମୋହନ)

୨୦୯ । କରିବ କର୍ତ୍ତବ୍ୟ କାର୍ଯ୍ୟ ସାଧନ କେବଳ
ବିଚଳିତ ହେବ ନାହିଁ ନ ହେଲେ ସଫଳ ।
ସାଫଲ୍ୟ ବିଷୟେ କିଛି ନ କର ବିଚାର
ମଣିବ କେବଳ କର୍ମେ ତୁମ୍ଭ ଅଧିକାର ।
(ଫକୀରମୋହନ)

୨୧୦ । ଆସିଛ ଜଗତେ କିପାଁ ନ ଯାଅ ପାସୋରି
ତୁମ୍ଭର କର୍ତ୍ତବ୍ୟ ଯାହା କଲ କି ସେପରି ?
ପଶୁର ସମାନ ସତ୍ୟ ଆହାର ବିହାରେ
ମାନବ ସ୍ୱତନ୍ତ୍ର ପ୍ରାଣୀ ଆତ୍ମ ବ୍ୟବହାରେ ।
(ଫକୀରମୋହନ)

୨୧୧ । ଶୁଣ ଶୁଣ ବାପା ମୋ ନିବେଦନ
ସାଧିବ କର୍ତ୍ତବ୍ୟ ଦେଇ ଜୀବନ ।
ପଛଘୁଞ୍ଚା ଦେଲେ କାର୍ଯ୍ୟ ସାଧନେ
କିବା ପ୍ରୟୋଜନ ସେହି ଜୀବନେ ।
(ଫକୀରମୋହନ)

୨୧୨ । କର୍ତ୍ତବ୍ୟ କରମେ ନୋହିବ ବିମୁଖ
କ୍ରମେ କ୍ରମେ ତହିଁ ଉପୁଜିବ ସୁଖ ।
ନ ପାଇଲେ ଫଳ ନୋହିବ ନିରାଶ
ବିପଦେ ଉଚିତ ଦ୍ୱିଗୁଣ ସାହସ । (କୁନ୍ତଳାକୁମାରୀ)

## ବିଶ୍ୱାସ

୨୧୩ । ଅବିଶ୍ୱସ୍ତ ଲୋକେ ବିଶ୍ୱାସ ନ କରିବ
ବିଶ୍ୱସ୍ତଠି ଅତି ଅତି ବିଶ୍ୱାସ ନ କରିବ ।
ବିଶ୍ୱାସୀକୁ ଅତି ବିଶ୍ୱାସ ଯେବେ କରି
କାଳର ଭୟ ପ୍ରାପ୍ତେ, ଥିବ ତାକୁ ଡ଼ରି ।
(ମହାଭାରତ : ଶାନ୍ତିପର୍ବ)

୨୧୪ । ମିତ୍ରଦ୍ରୋହୀ ତଥା କୃତଘ୍ନ ନର
ବିଶ୍ୱାସ ଘାତକ ଯେହୁ ଆବର ।
ଥିବାଯାଏ ଚନ୍ଦ୍ର ସୂର୍ଯ୍ୟ ପ୍ରକାଶ
ଏ ତିନି ନରକେ କରନ୍ତି ବାସ । (ରତ୍ନରେଣୁ)

୨୧୫ । ଗାଲୁଆ, ଶଠୁଆ, ଚୁଗୁଲିକୁହା
ନିଶାଖୋର, ଚୋର, ଓଳିଆମୁହାଁ
ଘରବୁଡ଼ା, ଅଲାଜୁକ
ଏମାନଙ୍କୁ ଦୂରୁଁ ଜୁହାର କରିବୁ
ଅଣବିଶ୍ୱାସୀ ଏ ଲୋକ । (ଲକ୍ଷ୍ମୀକାନ୍ତ)

## ଅନିତ୍ୟତା

୨୧୬ । ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା-ହୋଇଲେ ମରଇ । (ଭାଗବତ)

୨୧୭ । ଜାତ ଯେ ହୁଅଇ ସଂସାରେ
ମରଣ ଧ୍ରୁବଟି ତାହାରେ । (ଭାଗବତ)

୨୧୮ । ଦେହ ବହିଲେ ନିଶ୍ଚେ ମରି
ମରଣ ଗ୍ଲାନିରେ କମ୍ପା ଡରି । (ଭାଗବତ)

୨୧୯ । କେହୁ ରହୁନାହାଁ ରହିବ ନାହାଁନ୍ତି
ଭବରଙ୍ଗ-ଭୂମିତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ । (ରାଧାନାଥ)

୨୨୦ । ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ଦମସ୍ତଙ୍କ ଭାଗ୍ୟ ଡୋରି
ନିଜ ଭାଗ୍ୟଡୋରି କାଳ ହସ୍ତେ ଏହା
ପକାନ୍ତି ହେଲେ ପାଶୋରି । (ରାଧାନାଥ)

୨୨୧ । ବଡ ନିଠୁର କାଳ ବଡ ଅବିଶ୍ୱାସୀ
ହାବୋଡ଼ ଯିବ ସେ ଅତର୍କିତେ ଆସି ।
ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ଲୁଚି ବସେ । (ରାଧାନାଥ)

୨୨୨ । କାଳଠାରେ ନାହିଁ ଦୟା ମାୟା ଲେଶ
କରିଯାଏ ଚାଲି ନିଜ କାର୍ଯ୍ୟ ଶେଷ । (ଗୋପବନ୍ଧୁ)

୨୨୩ । ମଣିଷ ଜନମ ପାଇ ଏ ଜଗତେ
କିଏ ଏଡ଼ି ଦେବ ନିୟତି ଧାରା
ଆସିବା ଯିବାତ ଲାଗିଥିବ ଭବେ
ମଣିଷ ନହେବ ଶୋକରେ ଜାଳା । (ଚଣ୍ଡନାୟକ)

୨୨୪ । ମର୍ତ୍ତ୍ୟ ମଣ୍ଡଳରେ ଜନମିଲେ ଜନେ
ଅବଶ୍ୟ ଅଛି ମରଣ
ସର୍ବଗ୍ରାସୀ କାଳ ପ୍ରତି ନିମେଷରେ
କରୁଛି ଆୟୁ ହରଣ । (ଗଙ୍ଗାଧର)

୨୨୫ । ନଶ୍ୱର ଦେହରେ ଯୌବନ କୁସୁମ
ଫୁଟି ଦୁଇଦିନେ ଝଡ଼େ
ଗୋଡ଼ରେ ଆଡ଼େଇ ଦିଏ ତା ସଂସାରେ
ଖତକୁଢ଼େ ତାହା ପଡ଼େ ।
(ନନ୍ଦକିଶୋର)

୨୨୬ । ଜନ୍ମିଲେ ମରଣ ବିଧିର ବିଧାନ
କାହାକୁ ନ ଅଛି ଜଣା ?
ଯାଇଛି ଯା ଗୁଡ଼ି ନ ଆସେ ବାହୁଡ଼ି
ବୃଥା କମ୍ପାଇଁ ଶୋଚନା (ଫକୀରମୋହନ)

୨୨୭ । ରାଜା ମହାରାଜା, ଭିକ୍ଷୁକ କାମୀ
ସାଧୁ ବ୍ୟବସାୟୀ, କୃପଣ ଦାମୀ ।
ବାଳବୃଦ୍ଧ କନ୍ୟା ଯୁବା ଯୁବତୀ
ସମସ୍ତଙ୍କ ଏଥି ସମାନ ଗତି । (ଫକୀରମୋହନ)

୨୨୮ । ଅଯୋଧ୍ୟା ମଥୁରାପୁରୀ ଯାଇଛି ବିନାଶ
ଯଦୁବଂଶ ରଘୁବଂଶ ମଧ୍ୟ ଗଲେ ନାଶ ।
ଜଗତ ମଧ୍ୟରେ ଭାଇ କିଛି ନୁହେଁ ଥିର
ଏହିକଥା ମନେ ଭାଳ ବୁଦ୍ଧି ସ୍ଥିରକର ।
(ଫକୀରମୋହନ)

## ଭୟ

୨୨୯ । କାତରତା ବିନା କା'ପୁରୁଷ ପଣ
ଖାଇ ମାରେ ଅବା ମରେ କର ରଣ ।

ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେବେଁ ପରାଣ ଆତଙ୍କେ । (ଗୋପବନ୍ଧୁ)

୨୩୦ । ଲଭ ଆଶେ ଯେଉଁ ଭୀରୁ କ୍ଲୀବ ଜନ
ସହେ ଧର୍ମ ଅପମାନ
ସେ ହୀନ ପକ୍ଷରେ ବଞ୍ଚିଥିବାଠାରୁ
ଶ୍ରେୟସ୍କର ଯିବା ପ୍ରାଣ । (ନନ୍ଦକିଶୋର)

୨୩୧ । ନହୁଅ ବିପତ୍ତିବେଳେ କାତର
ନକର ସମ୍ପତ୍ତି ବେଳେ ଗୃତର । (ନନ୍ଦକିଶୋର)

୨୩୨ । ନିକଟକୁ ଭୟ ନ ଆସିବା ଯାଏ
ଥିବ ସିନା ତାକୁ ଡର
ଭୟ ଆସିଗଲେ ନିକଟେ ସହସା
ପ୍ରତିକାର ତାର କର ।
(ବିଶ୍ୱନାଥ)

୨୩୩ । ସବୁ କଥାରେ ଯେ ଡରେ,
ଜନମଟା ତାର ଅକାରଣ
ସେହୁ ଜୀଇ ଥାଉଁ ଥାଉଁ ମରେ । (ଲକ୍ଷ୍ମୀକାନ୍ତ)

୨୩୪ । ଭରମେ ପଡ଼ିଲ ସତ ବୋଲି ମଣି
ଗୋଡ଼ାଇଗଲା ଯୁବକ
ଧରୁ ଧରୁ ହାତୁ ଉଭାଇ ଗଲା ସେ
ଭକୁଆ ହେଲା ତାହିଁକ । (ଲକ୍ଷ୍ମୀକାନ୍ତ)

୨୩୫ । ବିପଦକୁ କରନାହିଁ ଖାତର
ବିପଦରେ ହେବୁ ନାହିଁ କାତର ।

ଦମ୍ଭ ହୋଇଥିବୁ ରହି
ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି । (ଲକ୍ଷ୍ମୀକାନ୍ତ)

## ପାପ ଓ ପାପୀ

୨୩୬ । ଯଜ୍ଞ ତୀର୍ଥ କଲେ ଯେବେ ପାପ ଛାଡ଼ୁଥାନ୍ତା
କ୍ଷୀରେ ଧୋଇଲେ ଅଙ୍ଗାର ଶୁକ୍ଳ କି ନୁହନ୍ତା ।
(ନୃସିଂହପୁରାଣ)

୨୩୭ । ପାପୀଙ୍କର ପାପକୁ ଯେ ଆଲୋଚନା କରେ
ସେ ପାପୀ ହୁଅଇ ଜାଣ ତାହାର ସଙ୍ଗରେ ।
ବୃଥାରେ ପରକୁ ନିନ୍ଦା କରେ ଯେଉଁ ଲୋକ
ଦେହ ଛାଡ଼ିଗଲେ ସେହୁ ଭୁଞ୍ଜଇ ନରକ ।
ନ୍ୟାଯ୍ୟ ଧର୍ମ ବସ୍ତୁରେ ଯେ ପକ୍ଷପାତ କରେ
ତାହାର ନିସ୍ତାର ନାହିଁ କୌଣସି ପ୍ରକାରେ ।
ପରଧନ ହରି ଯେହୁ ଅପରକୁ ଦିଏ
ପାପ ଭୋଗ ପାଇ ସେହୁ ନର୍କଗାମୀ ହୁଏ ।

୨୩୮ । ପାପକାରୀ ଲୋକ ସଙ୍ଗତେ ନ ଭୁଞ୍ଜିବ
ଏ ବାହାରେ ତାକୁ ବନ୍ଧୁ ନ କରିବ ।

ପାପୀ ଲୋକ ସଙ୍ଗେ ବର୍ଷେ କଲେ ସଙ୍ଗ
କରାଏ ଦେହଟିକୁ ନରକକୁ ଭୋଗ ।
(ମହାଭାରତ, ଶାନ୍ତିପର୍ବ)

୨୩୯ । ଜଗତ ଜନର ନିନ୍ଦା ଯେ କରେ
ପାପର ଭାଗୀ,
ମହତ ଜନର ନିନ୍ଦା ଯେ ଶୁଣେ
ପାପିତ ହୁଏ ସେ ସେଇଥି ଲାଗି ।
(ଗଡ଼ନାୟକ)

## ସାହସ

୨୪୦ । ମନ୍ତ୍ରର ସାଧନ ଶରୀର ପାତନ
ବେନରୁ ଏକ
ହେଲେ ବୀରଙ୍କର ଛୁଟଇ କି କେବେ
ସଂସାରେ ଟେକ ! (ରାଧାନାଥ)

୨୪୧ । ବଳବନ୍ତ ଠାରେ ବଳବନ୍ତ ସିନା
ପ୍ରକାଶଇ ପରାକ୍ରମ
ବଳହୀନ ଠାରେ ବଳ ଦେଖାଇବା
ନୁହଇଁ କ୍ଷତ୍ରୀୟ ଧର୍ମ ।

ନିଦ୍ରିତ, ନିରସ୍ତ ଶରଣ ଆଗତ
ଅବଳା, ଦୂତ, ବାଳକ
ଏମାନଙ୍କୁ ବଳେ ନାଶ କଲେ ଲାଗେ
ବୀର-ଯଶରେ କଳଙ୍କ । (ଗଙ୍ଗାଧର)

୨୪୨ । ସଂଗ୍ରାମରେ ନାଶ ହେଲେ ସ୍ୱର୍ଗବାସ
ଜିତିଲେ ଭୋଗ ସମ୍ପତ୍ତି,
ପଶ୍ଚାତ୍ ପଦ ହେଲେ ଅପଯଶ ଲଭି
ସହଜେ ନରକ ଗତି । (ଗଙ୍ଗାଧର)

୨୪୩ । ଶୁଣ ହେ ମଣିଷ ଭାଇ,
ଝୁରି ମରିବାକୁ, ବୁଡ଼ି ମରିବାକୁ ମଣିଷ ଜନମି ନାହିଁ ।
(କୁନ୍ତଳାକୁମାରୀ)

୨୪୪ । ଯେଉଁ ଜୀବିକାରେ ଧନ ସନମାନ
ଉଭୟ ମିଳଇ ଖରେ
ସେପରି ବୃତ୍ତିକୁ ନଠେଲିବ କେବେ
ମନେରଖ ଗୁଣୀ ନରେ । (ମନ୍ତ୍ର-ନିର୍ଝରିଣୀ)

## ମଣିଷର ମନ

୨୪୫ । ବନ ପୋଡ଼ିଗଲେ ଜାଣନ୍ତି ସରବେ
ମାରିବେ ପୋଡ଼ଇ ମନ
ମନ ପୋଡ଼ିଗଲେ ସଙ୍ଗେ ସଙ୍ଗେ ହୁଏ
ବିଦଗ୍ଧ ବିଶ୍ୱଭୁବନ । (ନନ୍ଦକିଶୋର)

୨୪୬ । ଏତେ କଷଣ ସହି ସସାଗ୍ର ନର
ଆଶା ତରୁ ତଳରେ ତୋଳଇ ଘର ।
ସହସା କାହୁଁ ଆସି ବିପଦ-ଘନ
ବରଷି ତା ସଂସାର କରେ ଉଚ୍ଛନ୍ନ । (ନନ୍ଦକିଶୋର)

୨୪୭ । ଉଚ୍ଚଠାରୁ ଉଚ୍ଚତମ କିବା—ନୀଳନଭ,
ଗଭୀରୁ ଗଭୀରତମ—ମହାସିନ୍ଧୁ ଗର୍ଭ ।
ଅତି ଦ୍ରୁତଗମ ଗତି କାହାର—ପବନ
ପାରେ କେ ସମସ୍ତ ଜିଣି—ମାନବର ମନ ।
(ଫକିରମୋହନ)

୨୪୮ । ସୁଖ ସୁଖ ବୋଲି ଖୋଜି ଲୋଡ଼ି ବୁଲେ
ସୁଖ ନାହିଁ, ସୁଖ ଅଛି ଆଶା ଭୁଲେ । (ଫକିରମୋହନ)

୨୪୯ । ସାଗର ଗର୍ଭକୁ କେ ପାରେ କଳି
ମାନବର ମନ ତହିଁରୁ ବଳି ।

× × ×

ଘଟଣା ଚକ୍ରରେ ମାନବ ମନ
ବିବିଧ ସ୍ୱରୂପ କରେ ଧାରଣ । (ଫକିରମୋହନ)

୨୫୦ । ଆହା କିବା ଅଦ୍ଭୁତ ମନର ଗତି
ଅଚିନ୍ତ୍ୟମାପୁ ଅଟେ ତାର ଶକତି ।
କ୍ଷଣ ମାତ୍ରକେ ମନ କରେ ଦର୍ଶନ
ଏହି ଅପରିସୀମ ବିଶ୍ୱ ଭୁବନ ।
ଜାଣଇ ସହଜରେ ମନୁଷ୍ୟ ମତି
ପ୍ରଭଞ୍ଜନର ବେଗ, ଆଲୋକ ଗତି । (ମଧୁସୂଦନ)

୨୫୯ । ମୁଁ ମର୍ତ୍ତ୍ୟ ମାନବ ଆଗପଛ ମୋର
କିଛି ଜଣାନାହିଁ, ଅନ୍ଧକାର ଘୋର ।
ତଥାପି ଆଶା ମୋ ରହିଛି ଜୀବିତ
କର୍ତ୍ତବ୍ୟେ ମୋ ପ୍ରାଣ କରି ଉତ୍ତେଜିତ ।
ଆଶା ସେ ତ ମୋର ହୃଦପୁର ମାଳ
ଆଶା ସେ ତ ମୋର ଜୀବନ ସମ୍ବଳ ।
କରମେ, ବଚନେ, ଜୀବନେ ମୋହର
ଆଶାକୁ ନେଇ ମୁଁ କରୁଅଛି ଘର ।
ତା ବିନା ଶୂନ୍ୟ ମୋ' ସମସ୍ତ ଜୀବନ
ସେ ତ ଯେସନ୍ତେ ଦେହ ନିଶ୍ୱାସ ପବନ ।
ଯହିଁ ଯାଏ ତହିଁ ଆଶା ଯାଏ ସଙ୍ଗେ
ଛାୟା ଯଥା ନିତ୍ୟ ଲାଗିଥାଏ ଅଙ୍ଗେ ।

(କୁନ୍ତଳାକୁମାରୀ)

୨୬୨ । ଉଚ୍ଚମନ ବିନା ଉଚ୍ଚ ଅଭିଳାଷ
ପୂରଣ କରଇ ଭବେ
ଭୂମିତାପ ବିନା ହରେ ବର୍ଷାଧାର
ପାରେ କି ତା ନଦୀ ଲଭେ ? (ମାନ୍ତ-ନିର୍ଝରିଣୀ)

୨୬୩ । ସ୍ମୃତିତ କଦାପି ନୁହେଁ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର । (ରାଧାନାଥ)

୨୬୪ । ବୃଥା ଭାବନା ଆଉ କରିବ ନାହିଁ
ଭାବନାରେ ଆନନ୍ଦ ମିଳଇ କାହିଁ ? (ମଧୁସୂଦନ)

୨୬୫ । ଗଲା କଥା ଭାବିଲେ କି ହେବ ଆଉ
ବସ୍ତୁ ଗରଭେ ସେ ଉଭେଇଯାଉ । (ନନ୍ଦକିଶୋର)

୨୫୬ । ଗଳ୍ପକଥା ଗଳ୍ପ ସ୍ମୃତି ପଟ୍ଟୁ ତାହା
ପୋଛିଦିଅ ମହାମନା
ଗତ କଥା ସ୍ମରି ଶୋଚନା କରିବା
ନାହିଁ ଶାସ୍ତ୍ରେ ଅଛି ମନା । (ଗଙ୍ଗାଧର)

## ଯଶ ଓ କୀର୍ତ୍ତି

୨୫୭ । ସର୍ବେ ଚଳିବେ କାଳବଳେ
ଯଶ ରହିବ ମହୀତଳେ । (ଭାଗବତ)

୨୫୮ । ଜନ୍ମ ମରଣ ଜଗତ ଏ
ଜନ୍ମ ଲଭି ମରୁନାହାନ୍ତି ବା କିଏ ?
ମାତ୍ର ଧନ୍ୟ ସିନା ତାର ଜନମ
ରଖେ ଯେ ଜାତି ବଂଶର ସୁନାମ । (ନୀତିଶତକ)

୨୫୯ । ଅପକୀର୍ତ୍ତି କଲା ଲୋକ ମଲା ସଙ୍ଗେ ସରି
କୌଣସି ପ୍ରକାରେ ତାକୁ ଲୋଡ଼ା ଯେ ନକରି ।
(ନାମରତ୍ନଗୀତା)

୨୬୦ । ଅସ୍ଥିର ସିନା ଏ ଜୀବନ
ଧନ ସମ୍ପଦ ଯଉବନ ।
ଅସ୍ଥିର ଭରଯା ସନ୍ତାନ
ଧର୍ମ, କୀରତି ସ୍ଥିର ଜାଣ । (ରତ୍ନରେଣୁ)

୨୬୧ । ଇହକାଳୁଁ ପରକାଳରେ ଅଧିକ
ଯଶ ଖ୍ୟାତି ମହତର
ନଷ୍ଟ କୁସୁମର ବାସ ହୋଇଥାଏ
ଅତରେ ଅଧିକତର । (ଗଙ୍ଗାଧର)

୨୬୨ । କେ ରହିଛି ଭବେ ବାସ୍ତବ ବିଭବେ
ସୁବର୍ଣ୍ଣ ମୁକୁଟ ବାନ୍ଧି ?
ଯଶ ଅପଯଶ ନୋହି କାଳବଶ
ହୁଅନ୍ତ ତା ପ୍ରତିବାଦୀ । (ଗଙ୍ଗାଧର)

୨୬୩ । କୀର୍ତ୍ତିମାନ ମରି ଭବେ ଲଭଇ ଜୀବନ
କଳଙ୍କିତ ପ୍ରାଣେ ଜୀଇ କିବା ପ୍ରୟୋଜନ ।
(ନନ୍ଦକିଶୋର)

୨୬୪ । ଜୀଇଁ ରହେ ନାହିଁ କେହି
ଧରାତଳେ ଯେହୁ କୀରତି ରଖଇ
ସେହି ଏକା ଜୀଇଥାଇ । (ଲକ୍ଷ୍ମୀକାନ୍ତ)

୨୬୫ । ଧନ୍ୟ ସେ ମାନବକୁଳେ ଯାହା ଯଶରାଜି
ଲୋକହିତ ବ୍ରତେ ଥାଏ ଜଗତେ ବିରାଜି ।
ମଲେ ଯାହା ନାମ ଥାଏ ଜଗତ ମଧ୍ୟରେ
ଅମର ଦେବତା ସେହି ମାନବ କୁଳରେ ।
(ଫକୀରମୋହନ)

୨୬୬ । କେତେ ମହାଜନ ଅସାଧ୍ୟ ସାଧନ
କରିଗଲେ କାଳବଳେ
କାହିଁ ତାଙ୍କ ବଂଶ ? ଅଛି ମାତ୍ର ଯଶ
ଆଜଯାଏ ମହୀତଳେ । (ଗୋପବନ୍ଧୁ)

## ବିବିଧ ବିଷୟ

୨୬୭ । ଆପଣା ହସ୍ତେ ଜିହ୍ୱା ଛେଦି
କେ ତାର ଅଛି ପ୍ରତିବାଧି । (ଭାଗବତ)

୨୬୮ । ବୁଦ୍ଧି ବିଚାରି କାର୍ଯ୍ୟ କଲେ
ପ୍ରମାଦ ନ ପଡ଼ଇ ଭଲେ । (ଭାଗବତ)

୨୬୯ । ଯେ ପକ୍ଷୀ ଉଡ଼େ ଯେତେ ଦୂର
ସେ ଜାଣେ ତହିଁର ବେଭାର । (ଭାଗବତ)

୨୭୦ । ସଂସାରେ ଥିବ ଯେତେ ଦିନ
ଆନନ୍ଦ କରୁଥିବ ମନ । (ଭାଗବତ)

୨୭୧ । ମୂକ୍ତୁ ମାଇଲେ ଯିବ ସର୍ଗ
ଦେବଙ୍କ ସଙ୍ଗେ କମ୍ପା କଳ । (ଭାଗବତ)

୨୭୨ । ଗରଜେ କଲୁ ଅଧିକାଶ
ସ୍ୱଭାବ ଛାଡ଼ିବ କପର । (ଭାଗବତ)

୨୭୩ । ଯହିଁ ଅନେକ ସଙ୍ଗ ମିଳି
ଅବଶ୍ୟ ଉପୁଜଇ କଳି । (ଭାଗବତ)

୨୭୪ । ନିଜ ରକ୍ଷଣ ଅସମ୍ଭବ
ସେ କାହୁଁ ପରକୁ ରକ୍ଷିବ । (ଭାଗବତ)

୨୭୫ । ଯେ ପୁଣ୍ୟ ଆପଣେ କରିବ
କେବେହେଁ ପରେ ନ କହିବ । (ଭାଗବତ)

୨୭୬ । ଅମୃତ ବଚନସୁ ବଚନ
କଷ୍ଟ ତୋଷିବ ପ୍ରାଣୀମନ । (ଭାଗବତ)

୨୭୭ । ମରଣକାଳେ ନଦ୍ଧାଗଲେ
ଯମ କ ଛାଡ଼ିଦେବ ଭଲେ ! (ଭାଗବତ)

୨୭୮ । କୁସୁମ ପରଶରେ ପଟ ନସ୍ତରେ
କେଉଁ ବଡ଼ଲୋକର ନ ବସେ ଶିରେ ?
କେଉଁ ମହତଗୁଣ ଅଛି ଭସ୍ମର
କ ନ କରନ୍ତି ତାକୁ ପାବଂଶ ବର ? (ଧାନକୃଷ୍ଣ)

୨୭୯ । ବିଘ୍ନ ଓ ବିପଦେ ଡର ନୀଚଜନ
ମହତ କରମେ ନ ଦଅଇ ମନ ।
ମଧ୍ୟମ ଆରମ୍ଭଇ କର୍ମ ସତ
ମାତ୍ର ବାଧା ପାଇ ହୁଏ ବିରତ ।
ବାଧା ବିପଦରେ ଟଳେ ନ ଡର
ଉତ୍ତମ ଜନ ଯାଏ କର୍ମ କର । (ନୀତିଶତକ)

୨୮୦ । ସାହିତ୍ୟ ସଙ୍ଗୀତ କଳା ନ ଜାଣେ ଯେ ଜଣ
ମଣିଷ ହେଲେହେଁ ତାକୁ ପଶୁ ବୋଲି ଗଣ ।
ନାହିଁ ତା ଲାଙ୍ଗୁଳ, ନାହିଁ ଶିଙ୍ଗ ସିନା ତାର,
ନ ଖାଏ ସେ ଘାସ, ଯାହା ପଶୁର ଆହାର ।
(ନୀତିଶତକ)

୨୮୧ । ଗଛଟି ସେ ନଇଁପଡ଼େ ଫଳ ଯେବେ ଆସଇ
ନୂଆ ପାଣି ଭରି ବନ୍ଧ ମେଘ ନଇଁ ଆସଇ ।
ବଢ଼ିବ ବେଳେ ସେପରି ତଳେ ଗର୍ବ ନବାନ୍ଧି
ସାଧୁ, ପରଉପକାରୀ ସ୍ୱଭାବରେ ବିନମ୍ରୀ ।
(ନୀତିଶତକ)

୨୮୨ । ଏକ ସୁବୃକ୍ଷ ବନେ ହୋଇ ପୁଷ୍ପିତ
ସମସ୍ତ ବନଦେଶ କରେ ବାସିତ ।
ତଥା ସୁପୁତ୍ର ଏକ ଲଭିଲେ ଜନ
ତାହା ଯୋଗୁ କୁଳ ହୋଇଥାଏ ଧନ୍ୟ ।
(ଚାଣକ୍ୟ)

୨୮୩ । ପଶ୍ଚିମ ସଭ୍ୟତାର ଏସନ ଭ୍ରାନ୍ତ
କାହୁଁ ବୁଝିବ ସେହୁ ସୁଗତ ମାତ୍ର ?
ଜୀବନେ ଜାଣନ୍ତି ସେ ଆପଣା ସୁଖ
କଥା କହନ୍ତି ସତେ ବକ-ଧାର୍ମିକ । (ମାଳକଣ୍ଠ)

୨୮୪ । କି ଫଳ ମୂଢ଼େ କହି ମାତ୍ର ବଚନ
କି ଫଳ ଅନ୍ଧ ଆଗେ ଧରି ଦର୍ପଣ । (ଚିନ୍ତାମଣି)

୨୮୫ । ନୀଚ ଉଚ୍ଚପଦେ ହେଲେ ମଣ୍ଡିତ
ମୂର୍ଖ : ପୁତ୍ର, ପ୍ରସାଦ ହୁଏ ପଣ୍ଡିତ ।
ଅମାନ୍ୟ ଯଦ୍ୟପି ଲଭେ ସମ୍ମାନ
ଜଗତକୁ ମଣେ ତୃଣ ସମାନ । (ଚିନ୍ତାମଣି)

୨୮୬ । ବଡ଼ ବୋଲି ନିଜେ ନିଜକୁ ମଣିବା
ଏଥୁବଳି ଅଛି ନିର୍ବୋଧତା କିବା ? (ଚିନ୍ତାମଣି)

୧୮୭ । ମହତ ଲୋକର ଧିନା ବେଭର ଏସନ
ନଜେ କଷ୍ଟ ସହ୍ଧ କରେ ଆଶ୍ରିତ ପାଳନ । (ଚନ୍ଦ୍ରାମଣି)

୧୮୮ । ଦୁର୍ବଳ ପୀଡ଼ନ ନୁହେଁ ବଡ଼ପଣ
ବଡ଼ପଣ ସିନା ଦୁର୍ବଳ ରକ୍ଷଣ ! (ଚନ୍ଦ୍ରାମଣି)

୧୮୯ । ଛୁଇଁଲେ ଚୂଡ଼ାନ୍ତ ସୀମା ସକଳ ଉନ୍ନତ
କ୍ରମେ କ୍ରମେ ଖୋଚିଆସେ ପୁଣି ଅଧୋଗତ ।
(ଚନ୍ଦ୍ରାମଣି)

୧୯୦ । ତରୁଣ ନ କରେ କାହାକୁ ଶଙ୍କା
ସ୍ୱର୍ଗ ଯିବ ପଛେ ନ ହୁଏ ବଙ୍କା ।
ଯୁବକ ଜାତର ଦଧୀଚ ଋଷି
ଜାତ ଲାଗି ମରେ ହୋଇ ସେ ଖୁସି । (ଚନ୍ଦ୍ରାମଣି)

୧୯୧ । ତନୁ ଉପରକୁ ଉଠିଥିବା ଲୋକ
ଜାଣିଥାଏ ତଳ କଥା
ଉଚ୍ଚାସନେ ଥାଇ ଯତ୍ନ କରଥାଏ
ହରବାକୁ ତଳ ବ୍ୟଥା । (ଗଙ୍ଗାଧର)

୧୯୨ । ଅସାଧ୍ୟ ସାଧଇ ଅଲଭ୍ୟ ଲଭଇ
ମାନବ କର ସାହସ
ସାହସ ପ୍ରସାଦେ ଆବିଷ୍କାର କଲେ
ଆମେରିକା କଲମ୍ବସ । (ଗଙ୍ଗାଧର)

୧୯୩ । ନିଜ ଶିରେ ମାଟି ଖୋଳି ନୋହୁ ଭୁହି ହୀନ
ମାଡ ସେଁହି ପରଅନେ, ବଞ୍ଚେ ଯେହୁ [illegible] ।
(ନନ୍ଦକିଶୋର)

୧୯୪ । କୃତଘ୍ନ ଯେ ଜନ ତାର ଶରୀର ନରକ
ପଦେ ପଦେ ତା ବଚନ କଷଣଦାୟକ ।
ନିରକୁଳେ କଳଙ୍କ ସେ ହୀନ-ମନ୍ଦ ପାପୀ
କହେ ଯେ ବଚନ ଆତ୍ମ-ଗରିମାକୁ ସ୍ଥାପି ।
(ଗୋଦାବରୀଶ ମହାପାତ୍ର)

୧୯୫ । ସ୍ନେହୀ ପ୍ରିୟଜନେ ଚାଲିଗଲେ ପାଶୁ
ଅନ୍ତିମ ମେଲାଣି ନେଇ,
ଏ ଶୂନ୍ୟ ଜଗତେ ଉଞ୍ଚିବ କେ ଧନ
ବିଷାଦେ ଯାପିବା ପାଇଁ ?
(ଗୋଦାବରୀଶ ମିଶ୍ର)

୧୯୬ । ଥରଟିଏ ଯେବେ କହିବୁ ମିଛ
ମିଛ ଲାଗିଥିବ ପଛକୁ ପଛ,
ମନ୍ଦକାମ କଲେ ଥରେ
ତାକୁ ଢାଙ୍କିବାକୁ ବହୁତ ମନ୍ଦ ଯେ
କରିବାକୁ ପଡ଼େ ପରେ । (ଲକ୍ଷ୍ମୀକାନ୍ତ)

୧୯୭ । ଅବୁଝା ନିଜର ଅବିବେକ ପଣ
ପାରେ ନାହିଁ କେବେ ଛୁଡ଼ି
ନଖରେ ଛିଡ଼ିବା କୁଠା ଖଣ୍ଡିକୁ ସେ
ହାଣଇ ଢେଙ୍କି କୁରାଢ଼ି । (ଲକ୍ଷ୍ମୀକାନ୍ତ)

୨୯୮ ।   କାଉ ଖବଦେଲେ   ଆଉ କାଉମାନେ
ପାଖକୁ ଆସନ୍ତି ଧାଇଁ ·
ଏକ ମେଳ ହୋଇ   ସମସ୍ତେ ରହିଲେ
ବିପଦେ ଡର ନଥାଇ ।   (ଲକ୍ଷ୍ମୀକାନ୍ତ)

୨୯୯ ।   ଯତନ କରିଲେ ରତନ ମିଳେ
ଏ କଥାଟି ବାପ ନ ଭୁଲ ତଳେ ।   (ଲକ୍ଷ୍ମୀକାନ୍ତ)

୩୦୦ ।   ଲୋଭୀଠାରୁ ବଡ ନାହିଁ ପାତକ
ଲୋଭର ଠକ ଦୁହେଁ ଜ୍ଞାନସ୍ଥ ଲୋକ
ମହତ ନଥାଏ କିଛି,
ପାଖରେ ବସାଇ   ନ ଦିଅନ୍ତି କେହି
ସମସ୍ତେ କରନ୍ତି ଛି ଛି ।   (ଲକ୍ଷ୍ମୀକାନ୍ତ)

୩୦୧ ।   ଲୋଭୀ ଚପାଟିରେ ଆଜ୍ଞା ସୁଖ ଅଛି
ଗୁଡିକେ ହୁଅନ୍ତି ରଜା
ଲୋଭର ଘରେ ନିତ ଆଲୁଅ ନଥାଏ
ଶେଷକୁ ବାହାରେ ମଜା ।
ଲୋଭୀ ମାଲ ଖାଇ ଦୁଇଦିନ ପାଇଁ
ପଛକୁ ହୁଏ ସେ ଶଲ
ଗତର ଖଟାଇ ଅଇଁଠା ପତର
ସହସ୍ର ଗୁଣରେ ଭଲ ।
(ଫକୀରମୋହନ)

୩୦୨ ।   ଯାହାର ଯେ କାମ   ନିରୂପିତ ଅଛି
ତାହାକୁ ସେ କାମ ସାଜେ
ନ ଜାଣିଲା ଲୋକ   ତହିଁ ହାତ ଦେଲେ
ପିଠିରେ ପାଞ୍ଚଣ ବାଜେ ।   (ଫକୀରମୋହନ)

୩୦୩ । ଜନ୍ମାନ୍ତର ପଥେ ବନ୍ଧୁ ଶତ ଶତ
ବେଢ଼ି ଅଛନ୍ତି ସ୍ଥଳେ ସ୍ଥଳେ
ହୋଇ ମହାବଳୀ ଗ୍ରୂଲ୍ଲ ପଦେ ଦଳି
ଉତ୍ସାହ ସାହସ ବଳେ । (ଫକୀରମୋହନ)

୩୦୪ । ସୁମତି କୁମତି ବିବାଦେ ଦୁର୍ଗତି
ସୁମତି ଲଭଇ ସିନା,
ଅମୃତ ଗରଳ ହେଲେ ଏକମେଳ
ଗରଳର ହୁଏ ଜଣା । (ଫକୀରମୋହନ)

୩୦୫ । ଆଜ ହୋଇନାହିଁ ଯାହା ହେବ ବୋଲି କାଲି
ମନକୁ ଭୁଲାଇ ନର ରହିଥାଏ ଭାଳି ।
ନୋହିଲେ ଶ୍ମଶାନ ଭବ ହୁଅନ୍ତା କ୍ଷଣକେ
ଶୂନ୍ୟ ହେଉଥାନ୍ତା ସବୁ ନୟନ ପଲକେ ।
(କୁନ୍ତଳାକୁମାରୀ)

୩୦୬ । ସଙ୍ଗ ବଳହୀନ ହତ ଆଦର
ବଳୀ ଲଭଇ ମାନ ସ୍ୱାନ୍ତ ଭିତର । (ରାଧାନାଥ)

୩୦୭ । ସାନ ବଡ଼ ଜ୍ଞାନ ଭେକର ଭିଆଣ
ଭେକ ତଳେ କେହି ନାହିଁ ବଡ଼ ସାନ । (ରାଧାନାଥ)

୩୦୮ । ଭବିତବ୍ୟ ଯାହା ଅବଶ୍ୟ ଘଟିବ
କିଏ ତା କରିବ ଆନ
କିଏ ଅବା ଏହି ଜ୍ୟୋତିଷ୍ଟକ୍ର ଗତି
ରୋଧିବାକୁ ବଳବାନ୍ । (ରାଧାନାଥ)

୩୦୯ । ଧିକ ତୋଷାମଦୀ    ଧିକ ଧିକ ତୋର
ଘୃଣିତ ହୀନ ଜୀବନ
ଧିକ ତୋ ଜୀବିକା    ଧିକ ଧିକ ସେହି
ଜୀବିକା ଜନିତ ଧନ ।    (ରାଧାନାଥ)

୩୧୦ । ତୁ ମନ କରିଛୁ    ତୋଷାମଦ କରି
ବଢ଼ାଇବୁ ଜାତି ମାନ,
ତୋଷାମଦ୍‌ଆର    କୁକ୍କୁର ପ୍ରକୃତି
ଅଇଁଠା ପତରେ ଧ୍ୟାନ ।
ତୋଷାମଦକାରୀ    କ୍ଷିପ୍ର ଶ୍ୱାନ ପରି
ସହଜେ ଚହ୍ନା ନ ଯାଏ
ଭୃତ୍ୟଭାବ ଧରି    ଗୋଡ଼ ଗୁଣ୍ଠୁ ଗୁଣ୍ଠୁ
ବିଷ ଲେପି ଦେଇଥାଏ ।
ତୋଷାମଦ ଅଟେ    ଅନ୍ଧାର ଗୋହିର
ସ୍ୱାର୍ଥ ତହିଁ ଲୁଚି ବସେ
ସରଳ ପଥିକ    ବାଟରେ ଦେଖିଲେ
ଅକାତରେ ତାକୁ ନାଶେ ।
(ମଧୁସୂଦନ ଦାସ)

# ଢଗ-ଢମାଳି

୧ । ଆ ବଳଦ ମତେ ବାନ୍ଧ । (ଜାଣିଶୁଣି ବିପଦକୁ ବରଣ କରିବା ।)

୨ । କଥା ମାଜିଲେ ମୋଟ, ସୂତା ମାଜିଲେ ସରୁ । ( ଗୋଟିଏ କଥାକୁ ଧରିବସି ବାରମ୍ବାର ଆଲୋଚନା କଲେ ତାହା କ୍ରମେ ବଡ଼ ଆକାର ଧାରଣ କରେ । )

୩ । କାମ ସାରି ବସ, ଭଗାରି ମାରି ହସ ।

୪ । ଖାଇବ ଯା'ର, ଗୁଣ ଗାଇବ ତାର । (ଉପକାରୀ ବ୍ୟକ୍ତିର ପ୍ରତ୍ୟୁପକାର କରିବା । )

୫ । ଖିଟିମିଟି ଗୃହଘର, ନିଆଁ ପାଣିକି ସଦା ଡର ।

୬ । ଠୁକୁର ଠୁକୁର ଗୃହକ, ସରିନୁହେଁ ଘୋଡ଼ା ପାଲିଙ୍କି ।

୭ । ଛଚଲ ପାଣିରେ କେଉଁଠି ଘର ପୋଡ଼ିଗଲାଣି ନା ମଣିଷ କଥାରେ ମଣିଷ ମଲାଣି ?

୮ । ତିନିଘର କୁଣିଆ ଉପାସ ରହେ ।

୯ । ତୋଳିବାକୁ ସହସ୍ର ଦିନ, ଭାଙ୍ଗିବାକୁ କ୍ଷଣେ । ( କୌଣସି ବସ୍ତୁ ଗଢ଼ିବା କଷ୍ଟ; କିନ୍ତୁ ଭାଙ୍ଗିବା ଅତି ସହଜ । )

୧୦ । ଥାଉ ମାନ, ଯାଉ ଧନ ।

୧୧ । ଦିନ ଯାଏ, କଥା ରହେ । ( ଦିନ ଦିନକର କଥା ବହୁ-କାଳକୁ ମନେରହେ । )

୧୨ । ନିଆଁ ନଥାଇ ଧୂଆଁ ବାହାରେ ନାହିଁ । (କାରଣ ନଥାଇ କାର୍ଯ୍ୟ ଦେଖାଯିବା ସମ୍ଭବ ନୁହେଁ । )

୧୩ । ବଡ଼ ଥିଲେ ପଚ୍ଛର, ସାନ ଥିଲେ ବିଚ୍ଛର ।

୧୪ । ବିନାଶ କାଳେ ବିପରୀତ ବୁଦ୍ଧି ।

୧୫ । ସବୁ ଯାଉ ମହତ ଥାଉ, ମହତ ଗଲେ ନମିଳେ ଆଉ ।

୧୬ । ନଖରେ ଛୁଣ୍ଡିବା କଥା କୁରାଢ଼ି ଯାଏଁ କଆଁ ନିବ ?

୧୭ । ନିଜ ବୁଦ୍ଧିରେ ଯୋଗୀ ହେବ, ପର ବୁଦ୍ଧିରେ ରଜାହେବ ନାହିଁ ।

୧୮ । ନିଜ ବୁଦ୍ଧିରେ ଘାସ କାଟିବ, ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ ।

୧୯ । ଅନ୍ଧ ଲେଖାରେ ଚନ୍ଦ୍ର ସୂର୍ଯ୍ୟ ନାହାନ୍ତି । ( ନିଜର ଅଜ୍ଞତା ହେତୁ ପ୍ରକୃତ ସତ୍ୟକୁ ଅସ୍ୱୀକାର କରିବା । )

୨୦ । ସାହସେ ମର, ସାହସେ ତର, ସାହସେ ଘର ଦୁଆର କର ।

୨୧ । ଅନ୍ଧାର ଘରକୁ ଢେଳା ଫିଙ୍ଗିବା ।

୨୨ । ଅନ୍ଧାରରେ ବାଡ଼ି ବୁଲାଇବା । ( ଅନୁମାନ ଉପରେ ନିର୍ଭର କରି କାର୍ଯ୍ୟ କରିବା । )

୨୩ । ଅନ୍ଧାର ଘରେ ମାଣିକ । ( ଅତ୍ୟନ୍ତ ଦରିଦ୍ର ଓ ଅଖ୍ୟାତ ପରିବାରରେ ପ୍ରତିଭାଶାଳୀ ଓ ଗୁଣବାନ୍ ପୁଅ ଜନ୍ମଗ୍ରହଣ କରିବା । )

୨୪ । ଆୟ ଦେଖି ବ୍ୟୟ କର ।

୨୫ । ଆରେ ଭାଇ, ଅର୍ଜି ପାରିଲେ ଗର୍ଜି ଖାଇ । ( ଲୋକର ବ୍ୟୟ ତାର ଆୟ ଉପରେ ନିର୍ଭର କରେ । )

୨୬ । ନିକିତି ତଉଲ ସାନବଡ଼କୁ, ଯେତୁ ବଡ଼ ହୁଏ ସେତୁ ତଳକୁ ।

୨୭ । କଉଡ଼ାକେ ତରି, କଉଡ଼ାକେ ମରି, କଉଡ଼ାକେ ଘର-ଦୁଆର କରି । ( ଅଳ୍ପ ଧନକୁ ପାଣ୍ଠି କରି ଲୋକେ ବଡ଼ଲୋକ ହୁଅନ୍ତି । )

୨୮ । ଠାକୁର ଖାଇ ଖଟୁଲି ଖାଇବା । ( ଲାଭ ଖାଇ ମୂଳଧନ ଖାଇଯିବା । )

୨୯ । ପଇସା ନବ ଗଣି, ପାଣି ପିଇବ ଛାଣି ।

୩୦ । ବସି ଖାଇଲେ ନଈବାଲି ସରେ ।

୩୧ । ମେଣ୍ଢା ଧୋଉ ଧୋଉ ନଙ୍ଗାଳ । ( ଅପବ୍ୟୟ ଯୋଗେ ବହୁ ସଞ୍ଚିତ ଧନ ମଧ୍ୟ କ୍ଷୟହୋଇଯାଏ । )

୩୨ । ଯେଡ଼େ ବାଉଁଶକୁ ତେଡ଼େ ପୋଲ ।

୩୩ । ଯେତକ ଚୂନାକୁ ସେତକ ପିଠା । (ଆୟ ଦେଖି ବ୍ୟୟ)

୩୪ । ଅତି ଭଲନୁହେଁ ଚବର ଚବର, ଅତି ଭଲନୁହେଁ ଚୁପ୍,
ଅତି ଭଲନୁହେଁ ବରଷା ବାଦଲ, ଅତି ଭଲନୁହେଁ ଧୂପ ।

୩୫ । ସମୁଦ୍ରକୁ ଶଙ୍ଖେ ପାଣି । ( ପ୍ରୟୋଜନ ଅନୁସାରେ ଯୋଗାଣ ଅତି କମ୍ ହେବା । )

୩୬ । କଟକ ଚିନ୍ତା ବାଇମୁଣ୍ଡିକି । ( କିମ୍ବଦନ୍ତୀ ଅଛି ଯେ ବାଇମୁଣ୍ଡିର ଉଦ୍ୟମ ଯୋଗୁଁ କାଠଯୋଡ଼ି ପଥରବନ୍ଧ ମରକତ କେଶରୀଙ୍କଦ୍ୱାରା ତିଆରି ହେଲା । ତା ଫଳରେ କଟକ ସହର ବନ୍ୟା-ହାଉରୁ ରକ୍ଷା ପାଇଲା । )

୩୭ । କାଶିଆ କପିଳାର ଭେଟ କାହିଁ ?

୩୮ । ପାଠ ପଢ଼ିବ, ମଧୁବାବୁ ପଟଙ୍ଗ ଲଢ଼ିବ, କାଳିଆ ଘୋଡ଼ାରେ ଚଢ଼ିବ ।

୩୯ । ବାରଶହ ବଢ଼େଇରେ ଦାୟ ନା ପୁଅରେ ଦାୟ !
( କୋଣାର୍କ ମନ୍ଦିର ତିଆରିର କିମ୍ବଦନ୍ତୀ । )

୪୦ । ଭଲ ରାମଚଣ୍ଡୀ ଭଲରେ, କଳାପାହାଡ଼କୁ ଦୁଆରେ ବସାଇ ଭଲ ପାଣି ଆଣି ଗଲରେ । ( କଳାପାହାଡ଼ ଓଡ଼ିଶାର ସବୁ ଦେବଦେବୀଙ୍କର ମୂର୍ତ୍ତିକୁ ଭାଙ୍ଗି ଛତ୍ରିଆ କରିଦେଇଥିଲେ

ମଧ୍ୟ ରାମଚଣ୍ଡୀଙ୍କୁ ପାଉନଥିଲା । ରାମଚଣ୍ଡୀ ପାଣି ଆଣିବା ବାହାନାରେ ମନ୍ଦିରରୁ ଗୁଳିଯାଇଥିଲେ ବୋଲି କମ୍ବଦନ୍ତୀ ଅଛି । )

୪୧ । ଯାହା ନଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁ ବଚନେ ।

୪୨ । ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ନିମନ୍ତେ । (ଈଶ୍ୱର ବିଶ୍ୱାସ । )

୪୩ । ଡର କାହାକୁ ଭୟ କାହାକୁ, ଠାକୁରେ ଅଛନ୍ତି ଚଉ-ବାହାକୁ । ( ଦୃଢ଼ ଈଶ୍ୱର ବିଶ୍ୱାସ ଥିଲେ ମନୁଷ୍ୟ କାହାରିକୁ ଭୟକରେନାହିଁ )

୪୪ । ବଡ଼େ ଚରନ୍ତି, ଗ୍ରେଟେ ଚରନ୍ତି, ମଝିମଝିକିଆ ବୁଡ଼ିମରନ୍ତି ।

୪୫ । ନର ହିଁ ନାରାୟଣ । ( ଈଶ୍ୱର ଜ୍ଞାନରେ ମନୁଷ୍ୟର ସେବା କରିବ । )

୪୬ । ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ?

୪୭ । ଯାହାର ମନ ଯେଉଁଠେ, ତାର ପ୍ରଭୁ ସେଠେ । (ମନୁଷ୍ୟ ତାର ନିଷ୍ଠା ଅନୁଯାୟୀ ଫଳ ପାଏ । )

୪୮ । ଯେ ଲୋକ ପାଞ୍ଚେ ପର ମନ୍ଦ, ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ।

୪୯ । ମାରେ ହରି ରଖେ କିଏ, ରଖେ ହରି ମାରେ କିଏ ?

୫୦ । ନାଗିଖିଆକୁ ମାଗିଖିଆ ସତ୍ନୁହେଁ ।

୫୧ । ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ । ( ଅଳସୁଆ ଲୋକଙ୍କୁ ଏପରି କୁହାଯାଏ । )

୫୨ । ଯତ୍ନ କଲେ ରତ୍ନ ମିଳେ । ( ଉଦ୍‌ଯୋଗ ସବୁ ଉନ୍ନତିର ମୂଳ । )

୫୩ । ଯିଏ ଦୁଧ ଖାଇବ, ସିଏ ନାଡ ସହିବ । (ସୁଖ ଭୋଗ କରିବାକୁ ହେଲେ ପ୍ରଥମେ କଷ୍ଟ ସହିବାକୁ ପଡ଼ିବ । )

୫୪ । ହେଳା କଲେ ଭେଳାବୁଡ଼େ । (ଅଳସୁଆ ଓ ଉଦ୍ୟମହୀନ ମଣିଷର ସର୍ବନାଶ ହୁଏ । )

୫୫ । ଚେଇଁ ଶୋଇବ ଯିଏ, ତାକୁ ଉଠାଇବ କିଏ ?

୫୬ । ଉଦ୍ୟମ କଲେ ସର୍ବସିଦ୍ଧି, ଜାଣିବ ଏହୁ ମହାବିଧି ।

୫୭ । ଆପଣା ଶିଙ୍ଗରେ ଭୂଇଁ ତାଡ଼ିବା । ( ନିଜେ ଉଦ୍ୟମ କରିବା । )

୫୮ । ଏକ ମନ ହେଲେ ସମୁଦ୍ର ଶୁଖେ । ( ଏକତା ବଳରେ ଅସାଧ୍ୟ ସାଧନ କରିହୁଏ । )

୫୯ । ମଇଁଷି ଶିଙ୍ଗ ଫଟା, ଯୁଝିଲ ବେଳକୁ ଗୋଟା ।

୬୦ । ଯୋଡ଼ାକୁ ଘୋଡ଼ା ସରି ନୁହେଁ । (ଏକତା ନିକଟରେ ବଳବାନ୍ ହାରମାନେ ।)

୬୧ । ଅଖ ବୁଲୁଥିଲେ ଚକ ବୁଲୁଥାଏ, ବୁଲିପଡ଼ୁଥାଏ ପନ୍ଥ, ସଂସାର ଭିତରେ ଘର କରିଥିଲେ ପଥର ଚଢ଼ିଲେ ସନ୍ଥ । ( ଭାଗ୍ୟର ପରିବର୍ତ୍ତନ ଅନୁଯାୟୀ ମନୁଷ୍ୟକୁ ସୁଖ ଓ ଦୁଃଖ ଭୋଗକରିବାକୁ ପଡ଼େ । )

୬୨ । କପାଳ-ଲିଖନ କେ କରିବ ଆନ ?

୬୩ । କାହାର ପୁଷମାସ, କାହାର ସର୍ବନାଶ ।

୬୪ । ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ । ( ମନୁଷ୍ୟ ଦୈବର ଅଧୀନ । )

୬୫ । ଯେମିତି କର୍ମ, ସେମିତି ଫଳ ।

୬୬ । ଆପେ ଚଷିବୁ ଦୂଗ୍ର ଗୃଷ, ଛଡା ଜୋଡା ଅଧାଗୃଷ, ମୂଲିଆ ଗୃଷ ଫସରଫାସ । ( ନଜର ତତ୍ତ୍ୱାବଧାନ ବିନା ଗୃଷକାମ ଭଲ ହୁଏନାହିଁ । )

୬୭ । ଗୃଷ ହୁଡ଼ିଲେ ବରଷେ, ପାଠ ହୁଡ଼ିଲେ ପୁରୁଷେ ।

୬୮ । ଗୃଷ ନାହିଁ ଯାର, ବାସ ନାହିଁ ତାର । (କୃଷିପ୍ରଧାନ ଦେଶରେ ଗୃଷର ଉପାଦେୟତା )

୬୯ । ଜଳ ବିହୁନେ ସୃଷ୍ଟି ନାଶ, ଜଳ ବହୁଲେ ସୃଷ୍ଟି ନାଶ । ( ଉଭୟ ଧୋଇ ଓ ମରୁଡ଼ି କୃଷିପାଇଁ କ୍ଷତିକାରକ ।)

୭୦ । ଜ୍ୟେଷ୍ଠେ କଦଳୀ ଆଷାଢ଼େ କଆ, ପୋତ ନ ପୋତ ହୁଅଇ ଠିଆ ।

୭୧ । କଳ ଯେବେ କରିବସିବ ସଙ୍ଗେ ଥିବ ଖଲ,
ଦୁଧ ଯେବେ ଖାଇବସିବ ଘରେ ଥିବ ଗାଈ ।

୭୨ । ଏ ବର୍ଷର ମକ୍ତ, ଆର ବର୍ଷକୁ ବଇଦ ।

୭୩ । ଖାଇବ ପିଠା, ଗାଇବ ଗୀତା, ତେବେ‌କେ ହୋଇବ ଜଗତ ଜିତା । ( ସ୍ୱାସ୍ଥ୍ୟପାଇଁ ପିଠା ଓ ଆତ୍ମାର ଭଲ ପାଇଁ ଗୀତା ଅଧ୍ୟୟନ ଆବଶ୍ୟକ । )

୭୪ । ପେଟ ପୂରିଲେ ଅମୃତ ପିଠା ।

୭୫ । ପେଟ ଜଳକରେ ମାଧିଆ ଯୋଗୀ । (ସହଜରେ ଖାଇବା ଯୋଗାଡ଼ କରିବାକୁ ସନ୍ନ୍ୟାସୀ ହେବା । )

୭୬ । ମାଗି ଆଣିଲି ତିଅଣ ଷୋଡ଼ିକାଏ ।

୭୭ । ଘୋଡ଼ାଚଢ଼ାଠ'ରୁ ସମ୍ପତ୍ତି ନାହିଁ, ଘରପୋଡ଼ାଠାରୁ ବିପତ୍ତି ନାହିଁ । ( ପୂର୍ବେ ଘୋଡ଼ା ସମ୍ପଦ ଓ ମର୍ଯ୍ୟାଦାର ମାନଦଣ୍ଡ ରୂପେ ଗୃହୀତ ହେଉଥିଲା । )

୭୮ । ଛଅ ଟଙ୍କାର ଘୋଡ଼ାକୁ ନଅ ଟଙ୍କାର ଦାନା । (ମୂଳବସ୍ତୁ-ଠାରୁ ତାର ରକ୍ଷଣାବେକ୍ଷଣ ବାବଦ ଖର୍ଚ୍ଚ ବଳିପଡ଼ିବା । )

୭୯ । ଛୋଟ ସାପର ବିଷ ଟାଣ । (ଛୋଟ ବୋଲି କାହାକୁ ଅବଜ୍ଞା ନକରିବା । )

୮୦ । ଓଧ ସଙ୍ଗେ ବଣଭୁଆ ବାଇ ।

୮୧ । ଗାଁପରିମଳ ଧୋବାଭୁଠରୁ ଜଣାପଡ଼େ ।

୮୨ । ଗାଁ ବଳଦ ଗାଁରେ ବିକାଏନାହିଁ ।

୮୩ । ଗାଁରେ ଯେବେ କରିବୁ ଘର,
ଅଧେ ଆପଣା ଅଧେ ପର ।

୮୪ । ନଈକୂଳ, ଗଛମୂଳ, ଏ ସଦାକାଳେ ଭଲ ।

୮୫ । ବାଟରେ ଦେଖିଲି କମାର, ଫାଳ ପକେଇଦେ ଆମର ।

୮୬ । ଅଜାଗା ଘା, ଦେଖିହୁଏନି କି ଦେଖେଇ ହୁଏନି ।

୮୭ । ଅର୍ଣ୍ଣି ଛୁରି ଭର୍ଣ୍ଣି କାଟେ ।

୮୮ । ଆଦର ନଥାଇ ଯେଉଁ ଭୋଜନ,
ଲବଣ ନଥାଇ ଯେଉଁ ବ୍ୟଞ୍ଜନ,
ଗାମ୍ଭୀର୍ଯ୍ୟ ନଥାଇ ଯେଉଁ ସ୍ନାହାନ—ସଖୀ ଗୋ ମନ୍ଦ ଏ ।

୮୯ । ଆପଣା ନାକକାଟି ପରର ଯାତ୍ରାଭଙ୍ଗ ।

୯୦ । ଆପେ ଭଲ ତ ଦୁନିଆ ଭଲ ।

୯୧ । କଷ୍ଟ କଲେ କୃଷ୍ଣ ମିଳେ ।

୯୨ । କାନ୍ଧରେ ପଡ଼ିଲେ ବଜାଇ ଶିଖନ୍ତି ।

୯୩ । ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ ।

୯୪ । ଧର୍ମରୁ ଜୟ ପାପରୁ କ୍ଷୟ ।

୯୫ । କହିବା ଲୋକ ବଡ଼ ନୁହେଁ, ସହିବା ଲୋକ ବଡ଼ ।

୯୬ । ନାନା ମୁନିଙ୍କର ନାନା ମତ ।

୯୭ । ଖାଇବ ସଅଳ, ଶୋଇବ ଆଗେ,
ଉଠିବ ସଅଳ, ଚାଲିବ ବେଗେ ।

୯୮ । ଯାହା ନୋହିଲା ବାଳକାଳେ,
ତାହା ନୋହିବ ପାଚିଲାବାଳେ ।

୯୯ । ଅତି ଭକ୍ତି ଚୋରର ଲକ୍ଷଣ ।

୧୦୦ । ଆପେ ପଣସ ଖାଇ ପର ମୁଣ୍ଡରେ ଅଠା ବୋଳିବା ।

୧୦୧ । ହାତୀ ନେ ଘୋଡ଼ା ନେ, ମୋ ପେଁକାଳି ବଜେଇଦେ ।
( କାମ ହାସଲ କରିବାକୁ ମିଛ ପ୍ରତିଶ୍ରୁତି ଦେବା । )

---